ANU HAJIJIBA PARE
*by Santanu Kumar Acharaya*
*Publishers: Vidyapuri, Cuttack 753002*
*1995*

ISBN 81-7411-137-10

ପ୍ରଥମ ପ୍ରକାଶ ନଭେମ୍ବର ୧୯୯୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଟାଇପ୍ ସେଟ୍
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ :
ଶ୍ୟାମ୍ ପ୍ରିଣ୍ଟର୍ସ, ମଧୁପାଟଣା,
କଟକ-୧୦

ମୂଲ୍ୟ ଟ ୪୦.୦୦

ଖରାଦିନ । ରାତି ପ୍ରାୟ ସାଢ଼େ ଦଶ । ଚାରିଆଡ଼େ ଆଲୁଅ । ହାଲୋଜନମୟ । ଦୋକାନ ବଜାରରେ ଜନଗହଳି କମିଗଲାଣି ଟିକେ; କିନ୍ତୁ ରାସ୍ତାରେ ଗାଡ଼ିମଟର ରିକ୍ସା ମଣିଷ ସବୁଦିନ ପରି ଚଳଚଞ୍ଚଳ । ଅନୁରାଗ କୋଚିଂ ସେଣ୍ଟର୍‌ରୁ ଫେରୁଥାଏ । ସାଇକେଲ୍‌ଟାର ଚେନ୍ ବାରମ୍ବାର ଖସି ପଡୁଥିବା ଯୋଗୁ ଟିକେ ଆସ୍ତେ ଆସ୍ତେ ପ୍ୟାଡଲ୍ ଚଳାଉଥାଏ ସେ ।

ହଠାତ୍ ଘଟିଲା ଏକ ବିଚିତ୍ର ଦୁର୍ଘଟଣା । କିଏ ଜଣେ କୋଉଠୁ ଯେମିତି ତା ନାଁ ଧରି ଡାକିଲା–‘‘ହେ ! ଅନୁ ! ଲୁକ୍ ଅପ୍ ! ଉପରକୁ ଦେଖ !’’

ଲୁକ୍ ଅପ୍ ? ବୁଝିପାରିଲା ନାହିଁ ଅନୁରାଗ– ପ୍ରଥମେ ସ୍ୱରକୁ, ଦ୍ୱିତୀୟରେ ଦିଗକୁ । କିଏ ଡାକିଲା କୋଉଠୁ ? ପଛକୁ ଫେରିଚାହିଁଲା ସେ । କେହି ନାହିଁ । ଦୁଇକଡ଼କୁ ଉଣ୍ଡିଲା । କେହି ତ କୁଆଡ଼େ ଚିହ୍ନାଜଣା ଦିଶୁନାହାନ୍ତି ? ହଜାର ହଜାର ମଣିଷ । କିନ୍ତୁ ଡାକିଲା ତାକୁ କିଏ କୋଉଠୁ ? କାର୍, ସ୍କୁଟର୍, ଟ୍ରକ୍, ବସ୍ ଛୁଟି ଚାଲିଥାନ୍ତି ସାଇଁ ସାଇଁ ।

‘‘ହେ ! ଲୁକ୍ ଅପ୍–ଅପ୍‌ୱାର୍ଡ ! ହିଅର୍ ହିଅର୍ ଇନ୍ ଦ ସ୍କାଇ–ମାଇଁ ଡିଅର୍ ଫେଲୋ !’’

ଗୋଡ଼ ଲଗେଇଲା ଅନୁରାଗ । ରାସ୍ତାକଡ଼କୁ ସାଇକେଲ୍‌ଟା କଟେଇନେଲା । ହଠାତ୍ ଗୋଟିଏ ଶକ୍ତିଶାଳୀ ଆଲୋକ ରଶ୍ମି ଅଠାଭଳି ଲାଗିଗଲା ତା ଦୁଇଆଖି ଉପରେ । ପରେ ପରେ ଆଲୋକ ରଶ୍ମିଟା ଗୋଟାଏ ଶକ୍ତ ଦଉଡ଼ି ଭଳି ଓଟାରିନେଲା ତାକୁ, ସାଇକେଲ୍ ସିଟ୍ ଉପରୁ । ସେ ଉଠିଗଲା ଉପରକୁ ଉପରକୁ । ଦଉଡ଼ି ଆଗରୁ ଝୁଲୁଥାଏ ସେ ତା ଆଖିଯୋଡ଼ାକରୁ, ଅଦୃଶ୍ୟ ବୁଢ଼ିଆଣୀ ସୂତା ଅଗରୁ ବୁଢ଼ିଆଣୀଟାଏ ଝୁଲିଝୁଲିକା ତଳୁ ଗଛ ଉପରକୁ ଆପେ ଆପେ ଉଠିଗଲା ପରି ।

ତା ପରେ ଅଦୃଶ୍ୟ ହେଇଗଲା ଅନୁରାଗ ନାମକ ଅଠର ବର୍ଷର ଟୋକାଟି । ସାଇକେଲ୍‌ଟା ପଡ଼ିରହିଲା ତାର ରାସ୍ତାକଡ଼ରେ ଅନେକ ସମୟ । ଅନୁରାଗର ଉଭାନ୍ ହେଇଯିବାକୁ କେହି ଲକ୍ଷ୍ୟ କରିଥିଲେ କି ନା କେଜାଣି ସେତେବେଳେ । କିନ୍ତୁ ତା ସାଇକେଲ୍‌ଟାକୁ ଲକ୍ଷ୍ୟ କରିଥିଲା ନିଶ୍ଚେ କେହି । ଅଳ୍ପ ସମୟ ପରେ

ସାଇକେଲଟା ବି ଉଭାନ ହେଇଗଲା । କେହି ଜଣେ ଉଠେଇନେଲା ତାକୁ । ରାସ୍ତାକଡ଼ ମଦଦୋକାନକୁ ନେଇ ପଚାରିଲା, "ଦି'ଶ ହବ ନି ? ବନ୍ଧା ରଖ । ଦେଲୁ ବୋତଲେ ବିଲାତି । ଅଉଲ୍ ମାର୍କା ବିଲାତି ମାଲ୍ ଲାଓ ଢେରା ଗର୍ଜନ ସିଂ !"

ଅନୁରାଗର ଆକ୍ସିଡେଣ୍ଟ୍ ନେଇ ତା ପରେ ଆଉ କିଛି ପ୍ରମାଣ ନ ଥିଲା କୋଉଠି ।

ଅନୁ ହଜିଗଲା ।

## [ଦୁଇ]

"ୟୁ ଫ୍ରମ୍ ଇଣ୍ଡିଆ ? ୟୋର୍ ନେମ୍ ଅନୁରାଗ ? ଫାଦରସ୍ ନେମ୍ ପରାଗ ? ୱେଲ୍‌କମ୍ ଟୁ ଆୱାର୍ ସେଣ୍ଟର..." ରିସେପସନ୍ କାଉଣ୍ଟର୍‌ରେ ନାଁ ରେଜିଷ୍ଟ୍ରି କରା ଚାଲିଥାଏ । ଲମ୍ୱାଧାଡ଼ି । ସାମ୍ନାରେ ଅନେକ ପିଲା, ପଛରେ ବି । ଅନୁରାଗର ପାଳି ଆସିଲା– ସାମନା ପିଲାଟି ତା କାଗଜପତ୍ର ଧରି ଆଗେଇ ଯିବା ପରେ । କାଉଣ୍ଟର୍ ପାଖାପାଖି ପହଞ୍ଚୁ ନ ପହଞ୍ଚୁଣୁ ଆଗନ୍ତୁରା ଶୁଣିଲା ଅନୁରାଗ ତା ଦେଶ ନାଁ, ନିଜ ନାଁ' ବାପାଙ୍କ ନାଁ ।

କାଉଣ୍ଟର ପଛପଟେ ବସିଥିଲେ ଜଣେ ବୟସ୍କା ଭଦ୍ରମହିଳା । ତାଙ୍କୁ ଦେଖୁ ଦେଖୁ ଅନୁରାଗର ମନକୁ ଆସିଲା–ଏ କ'ଣ ମାଡ଼ାମ କ୍ୟୁରି ? ଅନୁରାଗ ମନକୁ ସେଇ ନାଁଟା ସ୍ପର୍ଶ କରୁ ନ କରୁଣୁ ଅଳ୍ପ ହସିଲେ ମାଡାମ୍ । ଏଥର ଖାଣ୍ଟି ଓଡ଼ିଆରେ ଶୁଣାଗଲା ତାକୁ ।

"ତମ ଅନୁମାନ ଯଥାର୍ଥ ପୁଅ ! ମୁଁ ସେଇ ।"

"ଆପଣ ମାଡାମ୍ କ୍ୟୁରି ? ମାଡାମ୍ ମେରି କ୍ୟୁରି ? ରେଡିୟମ୍‌ର ଆବିଷ୍କର୍ତ୍ତ୍ରୀ ମାଡାମ୍ କ୍ୟୁରି ?" ଗଦ୍‌ଗଦ ଶୁଭିଲା ଅନୁରାଗର ସ୍ୱର ଅଧେ ବିଶ୍ୱାସ ଓ ଆଉ ଅଧେ ଘୋର ଅବିଶ୍ୱାସର ଭାବାବେଗର ଫେଣ୍ଟାଫେଣ୍ଟି ଭଳି ।

"ଧନ୍ୟବାଦ", ମାଡାମ୍ କ୍ୟୁରି ତା ପରେ ଅନୁରାଗ ହାତକୁ ବଢ଼େଇ ଦେଲେ ଗୋଟିଏ ଜଉମୁଦାଦିଆ ଲମ୍ୱା ଲଫାପା । କହିଲେ, "ନିଅ ବାବୁ । ରଖ, ଚାରିବର୍ଷ ପରେ ଫିଟେଇବ ।"

"ଚାରିବର୍ଷ ପରେ ? କାହିଁକି ?" ବିସ୍ମିତ ହେଲା ଅନୁରାଗ ।

"କାରଣ ତମେ ଏଠି ରହିବ ଚାରିବର୍ଷ । ଡିଗ୍ରୀ ନେବ । ଘରକୁ ଫେରିବ । କିନ୍ତୁ ଚାରିବର୍ଷ ପରେ କାଳେ ତମେ ଭୁଲିଯାଇଥିବ ନିଜର ନାଁ ଗାଁ ସେଇଥିପାଇଁ

ଏ ବ୍ୟବସ୍ଥା । ମନେରଖ, ଚାରିବର୍ଷ ଭିତରେ ଆଦୌ ଖୋଲିବ ନାଇଁ ଏ ଲଫାପାର କଉମୁଦ ଯେପରି । ନଚେତ୍..'' ମାଡାମ୍ କ୍ୟୁରି ମିଠା ହସଟିଏ ହସିଦେଇ ସତର୍କ କରିଦେଲେ ସମସ୍ତଙ୍କ ପରି ଅନୁରାଗକୁ ମଧ୍ୟ, ''ନଚେତ୍ ବ୍ୟକ୍ତିତ୍ୱଟି ତମର ପୂରା ନଷ୍ଟ ହୋଇଯାଇପାରେ । ଭାଙ୍ଗି ଚୁରମାର୍ ହେଇଯାଇପାରେ । ପାଗଳ ବି ହେଇଯିବାର ବହୁ ସମ୍ଭାବନା ତଦ୍ଦ୍ୱାରା । ମନେରଖ ।''

କିଛି ବୁଝିଲା ନାହିଁ ସେଥିରୁ ଅନୁରାଗ । ନିଜ ପରିଚୟ ବା ଇତିହାସର କିଛି ବିବରଣୀ ସେଇ ଲଫାପାଟା ଭିତରେ ରହିଛି ଯାହାକୁ ଚାରିବର୍ଷଯାକେ ନ ଖୋଲିବା ପାଇଁ ଏଇ ସତର୍କବାଣୀ– କେବଳ ଏତିକି ପ୍ରତି ଧ୍ୟାନ ଦେଇ ଆଗେଇ ଗଲା ସେ । ପଛ ପିଲା ଚାଲିଆସିଲା କାଉଣ୍ଟର୍‌କୁ ଏଥର । ଅନୁରାଗ ପରଦା ଆଡ଼େଇ ଗୋଟିଏ ବଡ଼ ହଲ୍‌ଭିତରକୁ ପଶୁ ପଶୁ ପଛରୁ ଶୁଣିଲା କଥାବାର୍ତ୍ତା । ମାଡାମ୍, କାଉଣ୍ଟର୍ ସାମ୍ନା ପିଲାଟିକୁ ପଚାରୁଥାନ୍ତି, ''ଫ୍ରମ୍ ପାକିସ୍ତାନ୍ ? ନେମ୍ ମିସ୍ ଖମାର୍ ମନସୁର୍ ? ଫାଦର୍ ନସିର୍ ଉଲ୍ଲା ?''

''ଜୀ ହାଁ''

''ୟୁ ଲୁକ୍ ଲାଇକ୍ ଇଣ୍ଡିଆନ୍ ।''

''ହର୍‌ଗୀଜ୍ ନେହିଁ–ଆମ୍ ଫ୍ରମ୍ କରାଚି–ପାକିସ୍ତାନ''

''ଠିକ୍ ହେ ବେଟୀ । ୟେ ଲେ ଲୋ । ଚାର୍‌ସାଲ୍‌କା ଅନ୍ଦର୍–ମତ୍ ଖୋଲ୍‌ନା । ସମ୍‌ଝା ?''

''ଜୀ ହାଁ''

''ଆଗେ ବଢ଼ିୟେ..'', ବିଶୁଦ୍ଧ ଉର୍ଦ୍ଦୁ ଉଚ୍ଚାରଣ ଶୁଭୁଥାଏ ମାଡାମଙ୍କ ହସ ହସ କଣ୍ଠରୁ ।

ଖମାର୍ କ୍ୟୁରୁ ବାହାରି ଆଗକୁ ଆସିଲା । ପରଦା ଆଡ଼େଇ ପଶିଲା ସେ– ତା ଆଗରୁ ଆସିଥିବା ପିଲାମାନେ ଯେଉଁଠି ବସି ସାରିଥିଲେ ଗୋଟିଏ ଗୋଟିଏ ଚେୟାର୍ ନେଇ, ସେଇଠିକି, ସେଇ ଲାଉଁଜ ଭଳି ହଲ୍‌କୁ ।

ଅନୁରାଗ ପାଖରେ ଗୋଟିଏ ଚେୟାର୍ ଖାଲି ପଡ଼ିଥାଏ ।

ଖମାର୍ ଲାଉଁଜ୍‌କୁ ପଶି ଚାରିଆଡ଼କୁ ଚାହିଁଲା । ଅଧିକାଂଶ ଚେୟାର୍ ଅଧିକୃତ ହୋଇସାରିଥାଏ ସେତେବେଳକୁ । ଗୋଟାଏ କଣବାଡ଼ିଆ ହେଇପଡ଼ିଥିବା ଅଳ୍ପ କେତେଟା ଖାଲି ଚେୟାର୍‌ଆଡ଼କୁ ଦୃଷ୍ଟି ଘୂରିଗଲା ତାର । ପୁଣି ଆଖି ବୁଲେଇ ଚାହିଁ ଦେଖିଲା ସେ– ଅନୁରାଗ ପାଖର ଖାଲି ସିଟ୍‌ଟାକୁ ।

"ପ୍ଲିଜ୍ କମ୍, ମିସ୍ ମନସୁର୍..", ମନେ ମନେ ନୁହେଁ ବେଶ୍ ଆଗ୍ରହରେ ଅନାଇଲା ଅନୁରାଗ, ଝିଅଟି ଆଡ଼କୁ, ଓ ଭାବିଲା ବୋଧହୁଏ ସୁନ୍ଦରୀ ଝିଅଟି ଆସୁଥାଏ ତା ନିମନ୍ତ୍ରଣ ରକ୍ଷାକରି ତା ପାଖ ସିଟ୍‌କୁ । ଝିଅଟି ମଧ୍ୟ ଆସୁଥାଏ ସେଇ ଦିଗରେ । ବେଶ୍ ସ୍ମାର୍ଟ ତାର ଚାଲିବାର ଢଙ୍ଗ—ଲକ୍ଷ୍ୟ କଲା ଅନୁରାଗ ।

ଝିଅଟି ତା ସାମ୍ନାରେ ପହଞ୍ଚିଯିବା ମାତ୍ରେ ନିଜ ସିଟ୍‌ରୁ ଉଠିପଡ଼ିଲା ଅନୁରାଗ । "ପ୍ଲିଜ୍ ଟେକ୍ ୟୋର୍ ସିଟ୍ ମିସ୍ ଖମାର୍...ଆଇ ଆମ୍ ଅନୁରାଗ ଫ୍ରମ୍ ଇଣ୍ଡିଆ", ଖାଲି ଚେୟାର୍ ଆଡ଼କୁ ସସମ୍ଭ୍ରମେ ହାତ ଦେଖେଇଲା ଅନୁରାଗ ।

"ଓଃ! ସରି..." ଠକ୍ ଠକ୍ ଠକ୍ ଠକ୍ ହିଲ୍ ଶବ୍ଦଟା ମୋଟା କାର୍ପେଟ୍ ଉପରେ ବି ଶୁଣିପାରିଲା ତା ପରେ ଅନୁରାଗ । ଝିଅଟି ଭୂତ ଦେଖିଲା ଭଳି ଅନୁରାଗର ମୁହଁକୁ ଥରେ ଚାହିଁଦେଇ ସିଧା ପଳେଇଗଲା ସେଇ କଣବାଡ଼ିଆ ଖାଲି ଚେୟାର୍ କେତେଟା ଆଡ଼କୁ ।

"ଓଃ! ସି ସର୍ଟ ଅଫ୍ ଆଫ୍ରେଡ୍ ଅଫ୍ ୟୁ ମିଃ..", କଡ଼ପଟୁ ଶୁଣିପାରିଲା ଫିସ୍ ଫିସ୍ ସ୍ୱର ଅନୁରାଗ ।

ଘୂରି ଦେଖିଲା—ଜଣେ ଲାଲ୍ ମୁହାଁ ଗୋରା ଟୋକା ତାକୁ ଅନାଇଛି ଆଶ୍ଚର୍ଯ୍ୟ ହେଲାପରି । ଦୃଷ୍ଟି ମିଳିଯିବାରୁ ସେ ଲାଲ୍ ରଙ୍ଗର ଗୋରା ଟୋକାଟା କହିଲା "ଆଇ ଆମ୍ ଥର୍ ! ଥର ହେଡରଡାହଲ୍ ଫ୍ରମ୍ ନର୍‌ୱେ । ମର୍ଣ୍ଣିଂ । ମିଃ ଇଣ୍ଡିଆ ସ୍ୟୁରଲି ?" ଲାଲ୍‌ମୁହାଁ ଗୋରା ପିଲାଟି ତା ଆଡ଼କୁ ହାତ ଲମ୍ବେଇଲା କରମର୍ଦ୍ଦନ ପାଇଁ ।

ଥର୍ ହେଡରଡାହଲ୍ ! ଆଶ୍ଚର୍ଯ୍ୟ ହେଲା ନାଁ ଟା ଶୁଣି ଅନୁରାଗ । ଏ ନାଁ ସହିତ ପରିଚିତ ଥିଲା ସେ । 'କନ୍‌ଟିକି' ଅଭିଯାନ ବହିଟା ଅଳ୍ପଦିନ ତଳେ ପଢ଼ିଥିଲା ସେ ତାଙ୍କ କଲେଜ ଲାଇବ୍ରେରୀରୁ । ବିଖ୍ୟାତ କନ୍‌ଟିକି ଅଭିଯାନ । ଭେଳା ବାନ୍ଧି ନୌକାକରି ତିନି ମହାସମୁଦ୍ର— ଆଟ୍‌ଲାଣ୍ଟିକ୍, ଭାରତ ମହାସାଗର ଓ ପ୍ରଶାନ୍ତ ମହାସାଗର ମଧ୍ୟସ୍ଥ ଇଷ୍ଟର୍ ଦ୍ୱୀପପୁଞ୍ଜକୁ ଅଭିଯାନ ? ଏ କ'ଣ ସେଇ ଥର୍ ହେଡର୍‌ଡାହଲ୍ ! ଆଶ୍ଚର୍ଯ୍ୟ ହେଇ ଟୋକାଟାର ଆଖିକୁ ଅନାଇବା ଭିତରେ 'ଥର୍' ସାଥିରେ କରମର୍ଦ୍ଦନ କରିସାରିଥାଏ ଅନୁରାଗ ।

"ଏ ଷ୍ଟ୍ରେଞ୍ଜ୍ ଲେଡ଼ି...", ଥର୍ ବେକ ଭାଙ୍ଗି ଚାହିଁଲା । ସେତେବେଳକୁ ମିସ୍ ଖମାର୍ ମନସୁର୍ ନିଜ ପାଇଁ ଗୋଟିଏ ସିଟ୍ ନେଇଗଲେଣି ଲାଉଞ୍ଜର

ଆରପାଖ ଖାଲି ସିଟ୍ କେଇଟାରୁ । ତାଙ୍କ ସହିତ ନୂଆ ନୂଆ କେତେଜଣ ପୁଅଝିଅ ବି ନିଜର ପରିଚୟ ପତ୍ରର ଢଉମୁଦ ଲଫାପା ଗୋଟାଏ ଗୋଟାଏ ହାତରେ ଧରି ବସିଲେଣି ଏଇ ଭିତରେ ।

"ଆର୍ ୟୁ ଗୋଇଂ ସମ୍‌ହ୍ୱେୟାର୍ ବାଇ ଏୟାର୍ ?" ଅନୁରାଗ ପଚାରିଲା ଥର୍‌କୁ ।

"ନୋ ଆଇଡିଆ ଆଟ୍ ଅଲ୍...", ଥର୍ ଏଥର ମୁହଁ ବୁଲେଇଲା ତା କଡ଼ପଟ ସିଟ୍‌କୁ ।

"ଏନି ଆଇଡ଼ିଆ ବିଲ୍ ? ହ୍ୱେଆର୍ ଆର୍ ୟୁ ?" ପଚାରିଲା ଥର୍ ତା ପାଖ ସିଟ୍‌ର ପିଲାକୁ । ସେ ବି ଗୋରା । କିନ୍ତୁ ଥର୍ ପରି ଲାଲ୍ ଟକଟକ ଦିଶୁ ନ ଥାଏ ତା ମୁହଁ । ମୁଣ୍ଡବାଳଗୁଡ଼ାକ ସୁନେଲି, ଖୁବ୍ ସରୁ, କିନ୍ତୁ ଗହଳିଆ । ବୋହି ପଡ଼ିଥାଏ କପାଳ ଉପରକୁ ଗୋଛାଟାଏ ଚଅଁର ପରି । ବଡ଼ବଡ଼ ନେଳି ନେଳି ଯୋଡ଼ାଏ ଆଖିରେ ବିଲ୍ ଚାହିଁଲା ଥର୍‌କୁ ।

"........" ବିଲ୍‌ର କଥା କିଛି ବୁଝିପାରିଲା ନାହିଁ ଅନୁରାଗ । କିନ୍ତୁ ତାକୁ ଲାଗିଲା ସେ ବୋଧହୁଏ ସେଇ ଝିଅଟି ବିଷୟରେ କିଛି ପଚାରିଲା ଥର୍‌କୁ । କାରଣ ପରେ ପରେ ବେକଭାଙ୍ଗି ସେ ବି ଲକ୍ଷ୍ୟକଲା ସେଇ ଦିଗକୁ ଯୋଉଠି ବସିଥାଏ ସେ ଝିଅ– ଯାହା ନାଁ ଖମାର ମନ୍‌ସୁର ।

ଲାଉଞ୍ଜ୍ ଭରିଗଲାଣି । ରେଜିଷ୍ଟ୍ରେସନ୍ ଶେଷ ହେଇସାରିଥାଏ ମଧ୍ୟ । କାଉଣ୍ଟର୍ ବନ୍ଦକରି ମ୍ୟାଡାମ୍ କ୍ୟୁରି ପଶିଲେ ଲାଉଞ୍ଜ୍ ଭିତରକୁ । ଏଡ଼ିକିଟିଏ ଛୋଟ ଆକାରର ସ୍ତ୍ରୀଲୋକଟିଏ ଆସି ଠିଆହେଲା ଲାଉଁଜରେ ସମସ୍ତଙ୍କ ଆଖି ସାମ୍ନାରେ । କାବା ହେଲା ଅନୁରାଗ । ଏ କ'ଣ ? ମାଡାମ୍ କ୍ୟୁରି କ'ଣ ଏଡ଼େ ଗେଡ଼ୀ ଥିଲେ ? ବିଲ୍‌କୁଲ୍ ମିଜେଟ୍ ?

ନିଜ ପ୍ରଶ୍ନର ଉତ୍ତର ମିଳିଗଲା ମଧ୍ୟ ଅନୁରାଗକୁ ତତ୍‌କ୍ଷଣାତ୍ । ତା ମୁଣ୍ଡ ଭିତରେ ଶୁଣାଗଲା ସେଇ ଶବ୍ଦ କେତେଟା । ଇଂରେଜୀରେ ବା ଫ୍ରେଞ୍ଚରେ ନୁହେଁ । ଓଡ଼ିଆରେ–"ସନ୍ଦେହର କାରଣ ମୋ ଆକାର, ନା ? ତେବେ ଦେଖ–ମୁଁ ମୋ ଆକାର ମଧ୍ୟ ବଡ଼ କରିଦେଇପାରେ ।"

କହୁକହୁ ବାମନ ସ୍ତ୍ରୀଲୋକଟି ଆସ୍ତେ ଆସ୍ତେ ଆକାରରେ ବଢ଼ିବାକୁ ଲାଗିଲା । କିଛି ସମୟ ପରେ ତା ମୁଣ୍ଡ ଯାଇ ଲାଗିଲା ଛାତରେ । ପ୍ରାୟ ବାରଫୁଟ

ଉଚ୍ଚର ମ୍ୟାଡମ୍ କ୍ୟୁରି ତା ପରେ ପଚାରିଲେ ସମସ୍ତଙ୍କୁ କୌଣସି ଭାଷାରେ ଯାହାର ଅର୍ଥ ପ୍ରତ୍ୟେକ ବୁଝିନେଲେ ତତ୍‌କ୍ଷଣାତ୍ ନିଜ ନିଜ ମାତୃଭାଷାରେ–

''ଭୟ ଲାଗୁଛି ? ମତେ ତୁମେ କେଉଁ ଉଚ୍ଚତାରେ ଦେଖିଲେ ଭୟଭୀତ ହେବ ନାହିଁ ବା ପରିହାସ କରିବ ନାହିଁ କୁହ !''

''ନର୍ମାଲ୍ ନର୍ମାଲ୍...'', ଏକାବେଳକେ ସ୍ୱର ଶୁଣାଗଲା ସବୁଆଡୁ ।

''ଠିକ୍ ଅଛି । ମୁଁ ଫେରିଆସୁଚି ତମର ବୋଧଗମ୍ୟ ହେବାଭଳି ଆକାରକୁ'', ମ୍ୟାଡାମ୍ କ୍ୟୁରି ପ୍ରାୟ ସାଢ଼େ ପାଞ୍ଚଫୁଟ ଉଚ୍ଚତାକୁ ଖସି ଆସିଲେ । ହସିଦେଲେ । ପୁଣି ପଚାରିଲେ, ''ବର୍ତ୍ତମାନ ପରିଚୟ ଦିଅ ନିଜ ନିଜର । କିଏ କହିପାରିବ ନିଜ ନାଁ ? ହାତ ଟେକ !''

ଗୋଟାଏ ଭୀଷଣ ପରିସ୍ଥିତି ଉପୁଜିଗଲା ଆଖି ପିଛୁଳାକେ ଲାଉଞ୍ଜ ଭିତରେ । ପ୍ରତ୍ୟେକ ପ୍ରତ୍ୟେକଙ୍କ ଆଡ଼କୁ ଭୟାର୍ତ୍ତ ଦୃଷ୍ଟି ନିକ୍ଷେପ କଲେ । ପ୍ରତ୍ୟେକଙ୍କ ଆଖିରେ ସେଇ ପ୍ରଶ୍ନ, ''କିଏ ମୁଁ ? କ'ଣ ମୋ ନାଁ ?'' ସତେକି ନିଜ ନାଁଟା ନିଜେ ଭୁଲିଗଲେ ବି ପାଖ ସିଟ୍‌ର କେହି ନିଶ୍ଚେ ମନେରଖିଥିବ ଏଇ ବିଶ୍ୱାସ ରଖି ତଥାପି ପରସ୍ପରକୁ ବିକଳ ହୋଇ ଚାହୁଁଥାନ୍ତି ସେତେବେଳେ ସେମାନେ । ଅନୁରାଗ ଚାହିଁଲା ଥର୍‌କୁ । ଥର୍ ଚାହିଁଲା ବିଲ୍‌କୁ ।

''ବର୍ତ୍ତମାନ ଶୁଣ ତମେମାନେ ପ୍ରକୃତରେ କିଏ ଓ କାହିଁକି ଏଠାକୁ ଅଣାଯାଇଛି ତୁମକୁ, ଶୁଣ ମନଦେଇ–'', ମ୍ୟାଡାମ୍ ଇସାରା କଲେ କାନ୍ଥ ଆଡ଼କୁ ।

ସମସ୍ତେ ଚାହିଁଲେ–କାନ୍ଥକୁ । ସାମ୍ନା କାନ୍ଥକୁ । ସେଟା ଯେ ଗୋଟାଏ କାନ୍ଥ ନୁହେଁ– ଏକ ବିଶାଳ କ୍ଲୋଜ୍‌ସର୍କିଟ୍ ଟି.ଭି. ସ୍କ୍ରିନ୍, ଏ ଧାରଣାଟା ଉଦୟ ହେବା ବେଳକୁ ସମସ୍ତଙ୍କ ଆଖି ଆଗରେ ଗୋଟାକ ପରେ ଗୋଟାଏ ମୁହଁ ଝଲସି ଉଠିଲା । ପ୍ରତ୍ୟେକଟି ମୁହଁ ସ୍କ୍ରିନ୍ ଉପରେ ଝଲସି ଉଠିବା କ୍ଷଣି ମ୍ୟାଡାମ୍ ପରିଚୟ କରାଇ ଦେଉଥାନ୍ତି ଜଣ ଜଣ କରି ସେମାନଙ୍କୁ ।

''ଏ ହେଲେ ଡକ୍ଟର ଫ୍ରୟଡ୍, ଏ ଡକ୍ଟର ଆଇନ୍‌ଷ୍ଟାଇନ୍... ଏ ଫ୍ରେଡେରିକ୍ ନିତ୍‌ସେ, ଏ ଡଃ କାର୍ଲମାର୍କସ୍... ଏ ହେଲେ ଡଷ୍ଟୋଏଭ୍‌ସ୍କି... ଆଉ ଏ ତମ ବର୍ଣ୍ଣ୍ରାଣ୍ଡ୍ ରସେଲ୍...''

ଧାଡ଼ିମୂଳିଆ ହେଇ ଗୋଟାଏ ଲମ୍ବା ସିରିଜ୍‌ର ନାଁ ସହିତ ହସହସ ଜୀବନ୍ତ ଛବିସବୁ ଅନୁରାଗର କାନ ଓ ଆଖିକୁ ଏକାବେଳକେ ଉଚ୍ଚାଟିତ କରିପକାଇଲା ।

ସାରା ଲାଉଁଜ୍‌ଟା ଯାକର ଦର୍ଶକ ମଧ୍ୟ ଉଚ୍ଚାଟିତ ହୋଇ ସାରିଥାନ୍ତି ସେତେବେଳକୁ । ଯେମିତିକି କିଏ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଲାଣି ସେତେବେଳକୁ । ଚୁପ୍‌ଚାପ୍ ବସିଥାନ୍ତି ସମସ୍ତେ । କେବଳ ମ୍ୟାଡାମ୍‌ଙ୍କ ସ୍ୱର ଶୁଭୁଥାଏ । କହୁଥାନ୍ତି ସେ ।

"ଏମାନେ ସମସ୍ତେ ଜୀବିତ । କେହି ମରିଯାଇ ନାହାନ୍ତି । ଅଲ୍ ଆଲାଇଭ୍, ଅଲ୍ ଆଲାଇଭ୍... ବୁଝିପାରୁଚ ?" ବୁଝିପାରୁ ନ ଥାଏ ଅନୁରାଗ । ଯଦିଚ ଟିକିଏ ପୂର୍ବରୁ ସେ ନିଜର ନାଁଟା ମନେପକେଇ ପାରି ନ ଥିବାରୁ ଅସ୍ତବ୍ୟସ୍ତ ହୋଇପଡୁଥିଲା ଅନେକ; କିନ୍ତୁ ବିଶ୍ୱର ଏ ସବୁ ମହୀୟାନ ବ୍ୟକ୍ତିଙ୍କୁ ଚିହ୍ନିବାରେ ବା ତାଙ୍କ ନାମ ଓ ସେମାନଙ୍କ କୃତିତ୍ୱ ସଂପର୍କରେ ଲେଶମାତ୍ର ସନ୍ଦେହ ନ ଥାଏ ତା ମନରେ । ଫ୍ରୟଡ୍, ଆଇନ୍‌ଷ୍ଟାଇନ୍, ମାର୍କସ୍, ନିତ୍‌ସେ, ଡଷ୍ଟୋଏଭ୍‌ସ୍କି– କିଏ ନ ଚିହ୍ନେ ନ ଜାଣେ ଏମାନଙ୍କୁ ? କିନ୍ତୁ ଏ କ'ଣ କହୁଚନ୍ତି ମାଡାମ୍ ? ସେମାନେ ମରିନାହାନ୍ତି, ବଞ୍ଚିଚନ୍ତି ! ଏ କ'ଣ ସମ୍ଭବ ?

ଏହି ଭିତରେ ପାଶ୍ କରିଗଲାଣି ଆହୁରି ଅନେକ ଅନେକ ହସହସ ମୁହଁ ସ୍କ୍ରିନ୍ ଉପରେ । ଆହୁରି ଅନେକ ଶୁଣା ଅଶୁଣା ନାଁ । କିନ୍ତୁ ମାଡାମ୍ ତଥାପି କହୁଥାନ୍ତି, "ଏମାନେ ମଧ୍ୟ ସମସ୍ତ ଜୀବିତ । ସମସ୍ତେ ଏଠିକି ଆସିବେ ତମମାନଙ୍କୁ ପାଠ ପଢ଼େଇବାକୁ ଉଚିତ ସମୟରେ ।"

ପାଠ ପଢ଼େଇବାକୁ ? ଏଇଠି ଡିଷ୍ଟର୍ବଡ୍ ହେଇଗଲା ଅନୁରାଗର ଧ୍ୟାନ ଆଉ ଟିକେ । ଏଟା କ'ଣ ତେବେ ପାଠ ପଢ଼ିବା ଜାଗା ? କୌଣସି କଲେଜ ବା ବିଶ୍ୱବିଦ୍ୟାଳୟ ? କେଉଁ ବିଶ୍ୱବିଦ୍ୟାଳୟ ଏ ?

ଟି.ଭି. ସ୍କ୍ରିନ୍‌ରେ ପୁଣି ମାଳେ ମୁହଁ । କହି ଚାଲିଥାନ୍ତି ମାଡାମ୍, "ଫ୍ରେଡ୍ ହୟଲସ୍ । ଏ ହେଲେ ଷ୍ଟେଡିଷ୍ଟେଟ୍‌ର ଥିଓରିଷ୍ଟ । ଆଉ ଏ ହେଲେ ସାର୍ ଆର୍ଥର୍ ଏଡିଂଟନ୍– ଏକ୍ସପ୍ୟାଣ୍ଡିଂ ୟୁନିଭର୍ସ ଥିଓରିର ବାଖ୍ୟାକାର । ପୁଣି ଏ ଜର୍ଜ ଗାମୋ ଯେ ଉଦ୍‌ଭାବନ କରିଚନ୍ତି ସେଇ ଶବ୍ଦ 'ବିଗ୍‌ବ୍ୟାଙ୍ଗ୍'.."

ବର୍ତ୍ତମାନ ଶୁଣାଗଲା ଗୋଟିଏ ଶୀର୍ଣ୍ଣସୀତ୍କାର । କିଏ ଜଣେ ନିଜର ଉତ୍ତେଜନା ଆଉ ସମ୍ଭାଳି ପାରିଲା ନାହିଁ । ପାଟିକରି ଉଠିଲା, "ଓଃ ! ବିଗ୍‌ବ୍ୟାଙ୍ଗ୍ ? ତା ମାନେ କସ୍ମୋଲଜି ପଢ଼ାହବ ଏଠି ?" ଭାଷାଟା ଥିଲା ଇଂରେଜୀ ବା ଜର୍ମାନୀରେ । କିନ୍ତୁ ଅନୁରାଗ ବୁଝିଲା ଏଥର ସ୍ପଷ୍ଟକରି ତା ଅର୍ଥ ଓଡ଼ିଆରେ ।

"କିନ୍ତୁ ତୁମେ ପଢ଼ିବ ଆହୁରି ଅନେକ ଅନେକ ବହି । ଶୁଣିବ ଆହୁରି ଅନେକ ଅନେକ ମୂଲ୍ୟବାନ ଜ୍ଞାନର ଉଚ୍ଚାରଣ । ଉଦାହରଣସ୍ୱରୂପ ପଢ଼ିଚ ଏ ଲୋକମାନଙ୍କର କିଛି ?" ହଠାତ୍ ସେତିକିବେଳେ ଆଖି ଆଗରେ, ସ୍କ୍ରିନ୍ ଉପରେ

ଝଲସି ଉଠିଲା ଗୋଟିଏ ମୁହଁ । ଅଟକିଗଲା କିଛି ସମୟ ପାଇଁ ସେ ମୁହଁ । ଗମ୍ଭୀର ଧ୍ୟାନମଗ୍ନ ଜଣେ ଭାରତୀୟ ଋଷି ଭଳି କେହି ଆଖି ଖୋଲି ମଧ୍ୟ କାହାରିକୁ ନ ଦେଖିଲା ପରି ବସି ରହିଥାନ୍ତି ଏକ ଆରାମ ଚେୟାର ଉପରେ । ତାଙ୍କର ଦୃଷ୍ଟି ପ୍ରସାରିତ ହେଉଥାଏ ଲାଉଞ୍ଜର ଚାରିକାନ୍ଥ ଭେଦକରି କୌଣସି ଏକ ଦିଗ୍‌ବଳୟର ଆରପାରିକୁ ଓ ଦିଗ୍‌ବଳୟ ପରେ ଦିଗ୍‌ବଳୟ ପାରିହେଇ ସଂପ୍ରସାରିତ ହୋଇଚାଲିଥାଏ ସେ ଦୃଷ୍ଟିର ଗତି ଅବିକଳ ଏକ ସ୍ୱୟଂ ସଂପ୍ରସାରଣଶୀଳ ବିଶ୍ୱ ବା ଏକ୍ସପ୍ୟାଣ୍ଡିଂ ୟୁନିଭର୍ସ ପରି ।

"କେହି ପଢ଼ିଚନ୍ତି କି ଏହାଙ୍କର ବିଖ୍ୟାତ ପୁସ୍ତକ ଲାଇଫ୍ ଡିଭାଇନ୍ ?" ପଚାରୁଥାନ୍ତି ମାଡାମ କ୍ୟୁରି ସାରା ଲାଉଞ୍ଜକୁ ।

କୌଣସି ଉତ୍ତର ମିଳିଲା ନାହିଁ ।

ସ୍ତବ୍ଧ ହୋଇ ପଡ଼ିଥାଏ ଅନୁରାଗ । ସେପର୍ଯ୍ୟନ୍ତ ସେ ବିଶ୍ୱାସ କରିପାରୁ ନ ଥାଏ ଘଟଣାଟାକୁ । ଏ ତ ମହାଯୋଗୀ ଶ୍ରୀ ଅରବିନ୍ଦ । ଚିହ୍ନିବାରେ ଭୁଲ୍ ନ ଥାଏ ନିଶ୍ଚେ ତା'ର । କିନ୍ତୁ କେଜାଣି କାହିଁକି ଫିଟୁ ନ ଥାଏ ତା ପାଟି ।

ସେତିକିବେଳେ ଶୁଣିଲା ସେ ମାଡାମ୍‌ଙ୍କ ସ୍ୱର, "ଏ ହେଉଛନ୍ତି ଶ୍ରୀ ଅରବିନ୍ଦ–ଭାରତୀୟ ଯୋଗୀ । ଏହାଙ୍କ ସୁପ୍ରାମେଣ୍ଟାଲ୍ ଥିଓରି ବିଶ୍ୱପ୍ରସିଦ୍ଧ । ଏ ଥିଓରିର ମୂଳ ଲକ୍ଷ୍ୟ ହେଲା–ଆଡ୍‌ଭେନ୍‌ଚର ଇନ୍‌ଟୁ କନସସ୍‌ନେସ ! ଆମର ଏଇ ଇନ୍‌ଷ୍ଟିଚିଉଟ୍‌ରେ ଚେତନାକୁ ନେଇ କେତେକ ଦୁଃସାହସିକ ଅଭିଯାନ କରାଯିବାର ପ୍ରସ୍ତାବ ରହିଛି । ଆଶା ଏଥିରେ ତୁମେ ମାନେ ନିଶ୍ଚେ ପାରିଉଠିବ । ତା ପରେ ଆଗେଇଗଲେ ଆହୁରି କିଛିବାଟ ତାଙ୍କ ପ୍ରୋଗାମ୍‌ର ଆଗାମୀ ଇଭେଣ୍ଟ୍‌ଗୁଡ଼ାକୁ ହାଇଲାଇଟ୍ କରିବା ଲକ୍ଷ୍ୟରେ ମାଡାମ୍ କ୍ୟୁରି ।

ଟି.ଭି. ସ୍କ୍ରିନ୍ ଉପରେ ଗ୍ୟାଲାକ୍ସି ପରେ ଗ୍ୟାଲାକ୍ସି ମହାପୁରୁଷଙ୍କ ଛବି ଭାସି ଭାସି ଚାଲିଗଲା–ଚିତ୍ତାକାଶରେ ଭାସିଯାଉଥିବା ମେଘଖଣ୍ଡଗୁଡ଼ିଏ ପରି । ଭାସିଆସିଲା ଶେଷରେ ରାମକୃଷ୍ଣ ପରମହଂସ ଓ ସ୍ୱାମୀଜୀଙ୍କ ଛବି । ଅଟକିଗଲା କେଇ ସେକେଣ୍ଡ ପାଇଁ ଟି.ଭି. ସ୍କ୍ରିନ୍ ଉପରେ ମୁହଁ ଦୁଇଟି ।

ହଠାତ୍ କଇଁକଇଁ ହେଇ ଶୁଭିଲା କାହା କାନ୍ଦ । ଚମକିପଡ଼ିଲେ ସମସ୍ତେ । ଟି.ଭି. ସୋ ବନ୍ଦ ହେଇଗଲାଣି । ପରେ ପରେ ଶୁଭିଲା ମାଡାମ୍‌ଙ୍କ ସ୍ୱର, "ଏ ସମସ୍ତେ ଜୀବିତ । ସେମାନେ ଏଇ ଚାରିଟି ବର୍ଷ ଭିତରେ ଭିଜିଟ୍ କରିବେ ଏ ସେଣ୍ଟର୍ । ତାଙ୍କଠାରୁ ପ୍ରତ୍ୟକ୍ଷ ଜ୍ଞାନଲାଭ କରିବ ତୁମେମାନେ । ଏହାପରେ ତୁମେ ଫେରିଯିବ ପୃଥିବୀକୁ ।"

"ଆମେ କ'ଣ ତେବେ ପୃଥିବୀରେ ନାହୁଁ ମାଡାମ୍ ?" କାନ୍ଦ ବନ୍ଦକରି ପଚାରିଲା ବ୍ୟଥିତ କଣ୍ଠରେ ଅନୁରାଗ ।

"ପୃଥିବୀ ୟୁନିଭର୍ସର ଏକ କ୍ଷୁଦ୍ର ଅଂଶ ମାତ୍ର । ଅଂଶରେ ରହି ସଂପୂର୍ଣ୍ଣର ପୂର୍ଣ୍ଣତା ଉପଲବ୍ଧି କଷ୍ଟକର । ତେଣୁ ତୁମମାନଙ୍କୁ ଏକ ଭିନ୍ନ ପ୍ଲେନ୍‌କୁ ଅଣାଯାଇଛି ଏକ ମହତ୍ତର ଲକ୍ଷ୍ୟରେ ।", ମାଡାମ ତା ପରେ ନିଜ ଆଡୁ ବୁଝେଇ ଦେଲେ ଲକ୍ଷ୍ୟଟି, "ପୃଥିବୀର ଲୋକସଂଖ୍ୟା ବର୍ତ୍ତମାନ ଛ'ବିଲିୟନ୍ ହେବାକୁ ଯାଉଛି ଅତିଶୀଘ୍ର । ଏଇ ଛ' ବିଲିୟନ୍ ଭିତରୁ ମାତ୍ର ଶହେ କୋଡ଼ିଏଟି 'ଗୁଡ୍‌ସୋଲ୍'ଙ୍କୁ ମନୋନୀତ କରିଛୁ ଆମେ । ମାତ୍ର ଶହେ କୋଡ଼ିଏଟି 'ଗୁଡ୍‌ସୋଲ୍' ଛ'ବିଲିୟନ୍ ମଣିଷଙ୍କ ଭିତରୁ । ବୁଝିପାରିଲ କିଛି ୟାର ଇଙ୍ଗିତ ? କିଛି ସିଗ୍‌ନିଫିକାନ୍ସ ?"

ସମସ୍ତେ ଚୁପ୍ । ମାଡାମ୍ କହୁଥାନ୍ତି—

"ଆଗାମୀ ଯୁଗ ପାଇଁ ମନୋନୀତ ବ୍ୟକ୍ତି ଏଇ ମାତ୍ର ଶହେ କୋଡ଼ିଏ । ସେମାନେ ଏଠାରୁ ଶିକ୍ଷାନେଇ ଫେରିବେ ପୃଥିବୀକୁ । ସେଇମାନେ ହେବେ ଜନନେତା—। ଛ' ବିଲିୟନ୍ ବା ତାଠୁଁ ଆହୁରି ଅଧିକ ଜନସଂଖ୍ୟା ବିଶିଷ୍ଟ ଏକ ମରଣଶୀଳ ପୃଥିବୀର ତ୍ରାଣକର୍ତ୍ତା ହେବେ ସେମାନେ...." । ଅଟକିଗଲେ ମାଡାମ୍ କଥା ଶେଷ କରିବା ପୂର୍ବରୁ । ବୋଧହୁଏ କେହି କିଛି ପ୍ରଶ୍ନ କରିବାକୁ ହାତ ଟେକିଲା ।

"ୟେସ୍—ଏନି କ୍ୱେଶ୍ଚିନ୍ ?" ପ୍ରଶ୍ନକର୍ତ୍ତାଙ୍କ ଆଡ଼କୁ ହାତ ଦେଖେଇ ପଚାରିଲେ ମାଡାମ୍, "କିଛି ପଚାରିବାକୁ ଚାହଁ ?"

"ଏଠାରେ ଇସ୍‌ଲାମିକ୍ ଷ୍ଟଡ଼ିଜ୍‌ର କ'ଣ କୌଣସି ପ୍ରୋଗାମ୍ ନାହିଁ ?" ଅନୁରାଗ ଦେଖିଲା—ସେଇ ଝିଅଟି । କ'ଣ ତା ନାଁ ? ଧନ୍ଦିହେଲା ସେ । କିନ୍ତୁ ନାଁଗୁଡ଼ାକ ସାମୟିକ ଭୁଲିଯିବାକୁ ନିର୍ଦ୍ଦେଶ ଥିଲା ମାଡାମ୍‌ଙ୍କର; ବୋଧହୁଏ ସେଥିପାଇଁ ପରିଚିତ ଝିଅଟିର ନାଁଟା ମଧ୍ୟ ମନକୁ ଆସିଲା ନାହିଁ ଅନୁରାଗର ।

"ଏଠାରେ କୌଣସି ଧର୍ମକୁ ନେଇ ଗବେଷଣାର ପ୍ରୋଗ୍ରାମ ନାହିଁ ମିସ୍ ଖମାର ମନସୁର୍...ଫରଗେଟ୍ ୟୋର ରିଲିଜିୟସ୍ ଆଇଡେନ୍‌ଟିଟି ଫାଷ୍ଟ...ଭୁଲିଯିବାକୁ କହିଥିଲି ସେଥିପାଇଁ ନିଜର ପରିଚୟ ଅର୍ଥାତ୍ ତମର ନାଁ, ଠିକଣା, ଧର୍ମ, ନ୍ୟାସନାଲିଜିମ୍, ଭାଷା ବା ବର୍ଣ୍ଣଗତ ପରିଚୟକୁ ।" ମାଡାମ୍ କ୍ୟୁରିଙ୍କ ମୁହଁରୁ ଖମାର ମନସୁର୍ ନାଁଟି ଭୁଲ୍‌ରେ ବାହାରି ଯାଇ ନ ଥିଲା । କାରଣ ପରେ ପରେ ସେ ଘୋଷଣା କଲେ—

"ଏଥର ମନେପକାଇପାର ନିଜ ନିଜ ନାଁ ଗାଁ ସବୁକିଛି । କିନ୍ତୁ ପରୀକ୍ଷା କରି ଦେଖ— ତମ ପୂର୍ବାଶ୍ରମଟା କେତେ ନିରର୍ଥକ ତମ ପାଇଁ । ଯେଉଁସବୁ

ବ୍ୟକ୍ତିମାନଙ୍କୁ ଦେଖିଲି ଛବିରେ ସେମାନେ ମଧ୍ୟ ନିଜର ପୂର୍ବାଶ୍ରମକୁ ନେଇ ଆଉ ସେପରି ଗର୍ବିତ ହେଉନାହାନ୍ତି । ଯେମିତି ମୋ ନିଜ କଥା— ମୁଁ ମୋର ପୂର୍ବଜନ୍ମରେ ଥିଲି ମେରୀକ୍ୟୁରି । ମତେ ସେମାନେ ଡାକୁଥିଲେ ମ୍ୟାଡାମ୍ କ୍ୟୁରି । କିନ୍ତୁ ଏ ଜନ୍ମରେ ତ ମୁଁ ଆଉ ସେଇ ମାଡାମ୍ କ୍ୟୁରି ହେଇ ରହିନାହିଁ ।''

''ତା ମାନେ ଆପଣ ମାଡାମ୍ କ୍ୟୁରି ନୁହନ୍ତି ମାଡାମ୍ ?'' ଅନୁରାଗ ପଡ଼ିଲା ଘୋର ସନ୍ଦେହରେ ।

''ସେଟା ମୋର ପୂର୍ବାଶ୍ରମ, କହିଲିନା ? ଏ ଜନ୍ମରେ ମୁଁ ଆଉ ପ୍ରକୃତରେ ସେଇ ମାଡାମ କ୍ୟୁରି— ୟୁରେନିୟମ୍ ରେଡିୟମ୍ ସାଙ୍ଗେ ଜୀବନ ବିତେଇଥିବା ମାଡାମ୍ କ୍ୟୁରି ହୋଇ ରହିଯାଇ ନାହିଁ । ବର୍ତ୍ତମାନ ମୁଁ ଫାର୍ ଫାର୍ ଆହେଡ୍— ବହୁ ଆଗରେ ସେଇ ଲୋକଟିର; ଯାହାକୁ ତମେ ଚିହ୍ନଟ କର ଏଇ ନାଁରେ—ମାଡାମ୍ କ୍ୟୁରି !''

ସବୁ ଯେମିତି ସେତିକିରେ ଗଣ୍ଡଗୋଳ ହେଇଗଲା ସମସ୍ତଙ୍କର । ପ୍ରବଳ ଗୁଞ୍ଜନ ଶୁଣାଗଲା ଚାରିଆଡୁ, ''ଆମେ ବଞ୍ଚିଚୁ ନା ମଲୁଣି ?'' ''କିଏ ଏମାନେ ଧରି ଆଣିଚନ୍ତି ଆମକୁ ଏଠିକି ?'' ''ମୋ ମା'ଙ୍କର ଦେହ ଖରାପ ଥିଲା— ତାଙ୍କୁ ଡାକ୍ତରଖାନାକୁ ନେଇଯାଉଥିଲି ମୁଁ ।'' ''ଓଃ ! ମୋ ବାପା ! ମୋ ବାପା !''

ଆରମ୍ଭ ହେଇଗଲା ପୂର୍ବସ୍ମୃତିଚାରଣ ହଠାତ୍ ବଡ଼ ଜୋର୍‌ରେ । ଅନେକ ଉଚ୍ଚ ସ୍ୱରରେ କାନ୍ଦିବା ଆରମ୍ଭ କରିଦେଲେ ମଧ୍ୟ ।

## [ତିନି]

ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର । ତା'ର ଚାରିପାଖେ ସେ ଯେଉଁ ଗଛବୃକ୍ଷ ଓ ତା ସେପାଖକୁ ଗୋଟିଏ ବିଶାଳ ନୀଳରଙ୍ଗର ସ୍ୟାହି କୁଣ୍ଡପରି ହ୍ରଦ ଓ ତା ସେପାଖକୁ ଲକ୍ଷ ଲକ୍ଷ ହାତୀ ଶୁଣ୍ଢ ଟେକି ଆକାଶରୁ ଓହ୍ଲାଇ ଆସୁଥିଲା ପରି ପର୍ବତମାଳା ଏବଂ ବହୁ ଦୂରରେ ଅଥଚ ଅତି ନିକଟରେ ଥିବା ପରି ଲାଗୁଥିବା ସେଇ ତୁଷାରାବୃତ୍ତ ପର୍ବତ ଶୃଙ୍ଗ ସମ୍ବଳିତ ଉପତ୍ୟକାଟିକୁ ଦେଖୁ ଦେଖୁ ଅନୁରାଗ ଭାବିନେଲା ସେଇ ଶବ୍ଦଟା—ହିମାଳୟ ।

କିନ୍ତୁ ଅନୁରାଗ ମୁହଁରୁ ସେ ଶବ୍ଦଟି ବାହାରିବା ପୂର୍ବରୁ ଜଣେ କିଏ କହିଲା, ''ଏ ଆମ ପାକିସ୍ତାନର କାଶ୍ମୀର୍ ଭ୍ୟାଲି..'' । ବୁଲିପଡ଼ି ଚାହିଁଲା ଅନୁରାଗ । ଦେଖିଲା ସେଇ ପାକିସ୍ତାନୀ ଝିଅ ଖମାର୍ ମନ୍‌ସୁର ବିଦେଶୀ ଛାତ୍ରଛାତ୍ରୀଙ୍କୁ ଶୁଣେଇ

ଶୁଣେଇ କହୁଚି, "ଏ ନିଶ୍ଚେ ଆମ କାଶ୍ମୀର, ଯୋଉଠିକି ଆମକୁ ଆଣିଚନ୍ତି ସେମାନେ । ଏ ଯୋଉ ହ୍ରଦ ଦେଖୁଚ ସେଇଟା ଡାଲ୍ ହ୍ରଦ ।"

"ତମକୁ ଦିଶୁଥାଇପାରେ କାଶ୍ମୀର ଭଳି । କିନ୍ତୁ ଏ କାଶ୍ମୀର ନୁହେଁ ।" ଜଣେ ବିଦେଶୀ ଛାତ୍ର ବୁଝୋଉଥାଏ ଖମାର୍‌କୁ, "ଏ ଜାଗା ଆମ ସ୍ୱିଜରଲ୍ୟାଣ୍ଡ ଛଡ଼ା ଅନ୍ୟ କୌଣସି ସ୍ଥାନ ହୋଇପାରେନା । ଏଭଳି ସୌନ୍ଦର୍ଯ୍ୟ କେବଳ ସ୍ୱିଜରଲ୍ୟାଣ୍ଡରେ ହିଁ ସମ୍ଭବ । ଏ ଯେଉଁ ପର୍ବତମାଳା ଦେଖୁଚ, ସେଗୁଡ଼ିକ ସବୁ ଆଲପସ୍ ମାଉଣ୍ଟେନ୍ ରେଞ୍ଜର ଅଂଶ ମାତ୍ର । ଆଉ ଏ ହ୍ରଦ ? ଡାଲ୍ ନୁହଁ କି ଉଲର୍ ନୁହଁ; ଏଇ ସେ ଜେନେଭା ଲେକ୍ ଯାହା କୂଳରେ ଆମ ଜେନେଭା ସହର ଅବସ୍ଥିତ । ଲେକ୍ ଜେନେଭା । ଏଇ ପାଖରେ ୟୁ.ଏନ୍.ଓର ଅଫିସ୍ ଯୋଉଠି ମଧ ଲିଗ୍ ଅଫ୍ ନେସନ୍ସର ପ୍ରଥମ ଅଧିବେଶନ ବସିଥିଲା ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ ବିଶ୍ୱଶାନ୍ତି ପାଇଁ ।"

"ତମେ କହୁଚ ସ୍ୱିଜରଲ୍ୟାଣ୍ଡ୍ ?" ଶୁଣାଗଲା ଏକ କର୍କଶ ବିଦେଶୀ ସ୍ୱର," ଏ ସ୍ୱିଜରଲ୍ୟାଣ୍ଡ୍ ନୁହେଁ । ଏମିତି ବହୁ ବହୁ ବିଉଟିଫୁଲ୍ ସିନିକ୍ ପ୍ଲେସେସ୍ ଅଛି ଆମ ୟୁ.ଏସ୍.ଏରେ । ଏଇ ଚାହଁ ସେ ଡିଷ୍ଟାଣ୍ଟ୍ ମାଉଣ୍ଟେନ୍‌ଗୁଡ଼ାକ । କ'ଣ ଦେଖୁଚ ? ଖାଲି ଧୂଆଁ ଧୂଆଁ ଧୂଆଁ ନା ? ୟେସ୍ । ବର୍ତ୍ତମାନ ବୁଝିଲି ମୁଁ–ସେମାନେ କୋଉଠିକି ଉଠେଇ ଆଣିଚନ୍ତି ମତେ । ଏ ତ ସ୍ମୋକୀ ମାଉଣ୍ଟେନ୍– ଆପାଲାଚିଆନ୍ ମାଉଣ୍ଟେନ୍ ରେଞ୍ଜର ମାଉଣ୍ଟ୍ ସ୍ମୋକୀ । ତମେମାନେ ସ୍ମୋକୀ ଦେଖିଚ କେହି ?" ବୁଲି ବୁଲି ଚାରିଆଡ଼କୁ ଚାହିଁଲା ତା ପରେ ସେଇ ଟୋକାଟା ଯାହାକୁ ଆମେରିକାର 'ବିଲ୍' ବୋଲି ଚିହ୍ନେଇ ଦେଇଥିଲା ଥର୍ ହେଡରଡାହଲ୍ ସେଦିନ ଅନୁରାଗକୁ, ସେଇ ନର୍‌ୱେର ନାଲିମୁହାଁ ଟୋକାଟା ।

"କଦାପି ନୁହେଁ, କଦାପି ନୁହେଁ !" ଗୋରା ବିଦେଶୀ ଟୋକାଙ୍କ ସ୍ୱର ଉପରକୁ ଚଢ଼ିଗଲା ଆଉ ଏକ ଶକ୍ତିଶାଳୀ ସ୍ୱର, "ଏ ହ୍ରଦର ନାଁ ଜାଣିଚ ? ୟାନା ଲେକ୍ ଟାଙ୍ଗାନାୟିକା । ଆଉ ସେ ମାଉଣ୍ଟେନ୍ ରେଞ୍ଜ ? ମାଉଣ୍ଟ୍ କିଲିମାନ୍‌ଜାରୋ ! ଆମେ ଏସିଆରେ ନାହୁଁ କି ୟୁରୋପରେ ନାହୁଁ । ଆମେରିକାରେ ତ କଦାପି ନୁହଁ । ଆମେ ଅଛୁ ଆମ ଦେଶରେ– ଆଫ୍ରିକା ମହାଦେଶର ଟାଙ୍ଗାନାୟିକାରେ । ବର୍ତ୍ତମାନ– ୟା ଉପରକୁ ଆଉ କିଛି ଅଛି କାହାର ଯୁକ୍ତି ? କାହାରି ଜ୍ଞାନ ଅଛି କି ବେଶି ଭୂଗୋଳରେ ମୋ ଯୁକ୍ତିକୁ କାଟିବା ପାଇଁ ?" କଳା ଆଫ୍ରିକାନ୍ ଟୋକାଟିଏ ଗୋରାଙ୍କୁ ଚାଲେଞ୍ଜ କରିବା ଆରମ୍ଭ କରିଦେଲାଣି ସେତେବେଳକୁ ।

"ୟେସ୍, ଜ୍ଞାନ ଅଛି ମୋର–", ମିଁ ମିଁ କା ସ୍ୱରଟିଏ ବାହାରିଲା କୁଆଡ୍ରୁ କେଜାଣି ସମସ୍ତେ ଖୋଜିଲେ କିଏ କହିଲା ସେମିତି ସ୍ୱରରେ, ଅବିକଳ ମହୁମାଛିର ଗୁଞ୍ଜନ ପରି, ଅଥଚ କାନ ଝାଇଁଝାଇଁ କରିଯାଉଥାଏ ଶୁଣିବା ମାତ୍ରେ ସେ ସ୍ୱର ।

ଅନୁରାଗ ବି ଖୋଜିଲା କୁଆଡ୍ରୁ ଆସୁଥାଏ ସେ ସ୍ୱର, ଶୁଣିବାକୁ । ଶହେ କୋଡ଼ିଏ ଜଣ ସଂପୂର୍ଣ୍ଣ ବିଦେଶୀ ପୁଅଝିଅ ଦଳ ଦଳ ହେଇ ଘୂରି ବୁଲୁଥାନ୍ତି ସେଦିନ ସକାଳେ ସେଇ ସ୍ୱର୍ଗର ନନ୍ଦନକାନନ ଭଳି ଉପତ୍ୟକାଟିରେ । ବ୍ରେକ୍‌ଫାଷ୍ଟ ପରେ ବାହାରି ଆସିଥାନ୍ତି ସେମାନେ ସକାଳୁ ସକାଳୁ ନିଜ ନିଜ ବଖରାରୁ, ହଷ୍ଟେଲ୍‌ରୁ । ବ୍ରେକ୍‌ଫାଷ୍ଟ ଦିଆଯାଇଥାଏ ଓ୍ୱେଷ୍ଟର୍ଣ୍ଣ ଷ୍ଟାଇଲ୍‌ରେ–ମିଲ୍‌କ୍, ସିରିଆଲ୍‌ସ, ଏଗ୍‌ସ, ଟୋଷ୍ଟ, ବଟର୍ ଆଉ ଫ୍ରୁଟ୍‌ଜୁସ୍ । ତା ଛଡ଼ା ଟି ଅର୍ କଫି । ତୋସ୍ତ ଖାନା ପିନା ସାଙ୍ଗକୁ ପୂରା ମଡର୍ଣ୍ଣ ହୋଟେଲ୍‌ର କମ୍ଫର୍ଟସ୍ ମଧ୍ୟ ଏଠାକା ହଷ୍ଟେଲ୍‌ରେ, ଯୋଉ କାରଣରୁ ଗଲା ଆଠ ଦଶ ଦିନ ଧରି ଖୁବ୍ ମଜା ଲାଗୁଥାଏ ଅନୁରାଗକୁ ଏଠାକା ରହଣି, ଯଦିଚ ରାତିରେ ବହୁତ କାନ୍ଦିଚି ସେ ପ୍ରଥମ ପ୍ରଥମ ଚାରି ଛ' ଦିନ ପିଛିଲା ଜୀବନ ବା ମ୍ୟାଡାମ୍‌ଙ୍କ ଭାଷାରେ ପୂର୍ବାଶ୍ରମ କଥା ସ୍ୱପ୍ନରେ ମନେପଡ଼ିଯିବାରୁ ତାର । ବାପା ମା ସାନ ଭଉଣୀ ଦିଜଣ୍ ସ୍ୱପ୍ନରେ ଆସୁଥାନ୍ତି ତା ପାଖକୁ ରାତିରେ । ବାପା ପଚାରୁଥାନ୍ତି, "କ'ଣ କରୁଚୁ ଏଠି ଅନୁ ? ତୁ ପରା ଯାଇଥିଲୁ କୋଚିଂ ସେଣ୍ଟର୍ ?" ତା ଉତ୍ତର କିଛି ଦେବା ପୂର୍ବରୁ କୋହ ଉଠୁଥାଏ ଅନୁର । କାନ୍ଦି କାନ୍ଦି ତକିଆ ଭିଜିଯାଇଥାଏ ସକାଳକୁ ।

କିନ୍ତୁ ନିଦ ଭାଙ୍ଗିଗଲେ ଏ ଜାଗାଟା ଖୁବ୍ ଆରେଇଲା ଭଳି ଲାଗିଲାଣି ତାକୁ ଆସ୍ତେ ଆସ୍ତେ । ଖାଇବା ପିଇବା ରହିବା ଶୋଇବାରେ ତ ଏତେ ଟିକେ ଅସୁବିଧା ନ ଥାଏ । ତେବେ ମଝିରେ ମଝିରେ ଚାଉଁକିନା ମନକୁ ଆସିଯାଉଥାଏ ସେଇ ପ୍ରଶ୍ନ–

"କିଏ ମୁଁ ? କୋଉଠିକି ଆସିଚି ? କାହିଁକି ? କୌଣସି ସ୍ମୃତି କିଛି ଜ୍ଞାନ ଅଛି କି ମୋର ?"

ହଠାତ୍ ସେଇ ପ୍ରଶ୍ନଟାର ଉତ୍ତର ଭଳି ଶୁଭିଲା ବର୍ତ୍ତମାନ ଅନୁରାଗ କାନକୁ, ସେଇ ଚ୍ୟାଉଁ ଚ୍ୟାଉଁ ଗୁଣୁଗୁଣିଆ ଧ୍ୱନୀଟି ଭିତରୁ– ୟେସ୍ ! ଜ୍ଞାନ ଅଛି ମୋର ।

ଅନୁରାଗ ଘୂରି ଘୂରି ଚାହିଁଲା । ଦେଖିଲା–ଜ୍ଞାନୀ ପିଲାଟା ଅନ୍ୟ କେହି ନୁହେଁ । ସେଇ ସାନ ପିଲାଟି ଭଳି ଦେଖିବାକୁ ଚାଇନିଜ୍ ଟୋକାଟା ଯେ ଗୋରା ଓ କଳା ଟୋକାଙ୍କୁ ବାତ୍ ବତଉଥାଏ ଜାଗାଟାର ଓନର୍‌ସିପ୍ ଉପରେ, ଆଉ କହୁଥାଏ, "ଏଇଟା ହିମାଳୟ ! ଆମ ତିବ୍ବତାନ୍ ହିମାଳୟ ! ଆଉ

ସେ ସ୍ନୋକୀ ପାହାଡ଼ଟା ସ୍ନୋକୀ ଫୋକି କି କିଲ୍‌ମାନ୍‌ଜାରୋ ଫାରୋ କିଛି ନୁହଁ—ତା ନାଁ କୈଳାଶ ପର୍ବତ । ଆମ ଚୀନ୍‌ର !''

ଅନୁରାଗର ଇଚ୍ଛା ହେଉଥାଏ ବଡ଼ ପାଟିରେ କହିଦବାକୁ, ''ହିମାଳୟ କାହା ବୋପା ସମ୍ପତ୍ତି ନୁହେଁ—ଏଟା ପୂରାପୂରି ଦେବତାମାନଙ୍କର ।''

କିନ୍ତୁ ତା କହିବା ପର୍ଯ୍ୟନ୍ତ କଥା ଗଲା ନାହିଁ । ସେଇ ଆମେରିକାନ୍ ଟୋକା ବିଲ୍ ଚେତେଇ ଦେଲା ସେ ଚାଇନିଜ୍ ପିଲାକୁ । ''ମିଃ ଚାଓ ! ତମର ଯଦି ଭୂଗୋଳରେ ଜ୍ଞାନ ଥାଆନ୍ତା ଏତେ ଟିକେ, ତେବେ ତମେ ବୋଧେ କହନ୍ତ ନାଇଁ— ତିବ୍ବତ ତମ ଦେଶ ଚୀନର ବୋଲି । ଆମେ ତ ଆମ ସ୍କୁଲ୍‌ରେ ପଢ଼ିଚୁ ତିବ୍ବତ ଦଲାଇଲାମାଙ୍କ ଦେଶ— ତମେ ତାକୁ ଜବରଦସ୍ତ ମାଡ଼ିବସିଲଣି ଉଣେଇଶ ଶହ ପଚାଶରୁ । ତିବ୍ବତ ଇଜ୍ ଏ ସେପାରେଟ୍ ଜ୍ୟୋଗ୍ରାଫିକାଲ୍ ଏଣ୍ଟିଟି—ଫିଜିକାଲ୍ ଜ୍ୟୋଗ୍ରାଫିର ମ୍ୟାପ୍ ମନେପକେଇଲ ଦେଖି ?''

''ଖାଲି ତିବ୍ବତ ପ୍ରଶ୍ନ କାହିଁକି ଉଠୁଚି ଏଠି ? କାଶ୍ମୀର ପ୍ରଶ୍ନ ବି ଉଠିବା ଉଚିତ,'' କୋଉଠି ଥିଲା ଖମାର୍ ମନ୍‌ସୁର୍ କେଜାଣି । ମାଡ଼ିଆସିଲା ସେଠିକି ଯୋଉଠି ସେ ଆମେରିକାନ୍ ଟୋକା ବିଲ୍ ଠିଆ ହେଇ ଭୂଗୋଳ ଉପରେ ବକ୍ତୃତାଟିଏ ଆରମ୍ଭ କରିଥିଲା ସେଇ ମାତ୍ର । ଖମାର୍ ମନ୍‌ସୁର୍ ତା ପରେ ନିଜ ଆଡୁ ନିଜେ ଉଠେଇଲା ପ୍ରଶ୍ନଟା—

''କାଶ୍ମୀରକୁ ଇଣ୍ଡିଆ ମାଡ଼ିବସିଚି । ଆପଣମାନେ ନିଶ୍ଚେ ଜାଣନ୍ତି । ଏଠି ତ ସାରା ବିଶ୍ୱର ଶହେକୋଡ଼ିଏ ଜଣ ପ୍ରତିନିଧି ଅଛନ୍ତି । କହନ୍ତୁ, କାଶ୍ମୀର ଭାରତର ନା ପାକିସ୍ତାନର ? ହ୍ୟୁମାନ୍ ରାଇଟ୍‌ସର କି ସାଙ୍ଘାତିକ ଉଲ୍ଲଘଂନ ଘଟୁଚି ଏଠି ବରାବର ଜାଣୁଥିବେ । ନାରୀମାନଙ୍କର ଇଜ୍ଜତ ବୋଲି ଏଠି ଆଉ କିଛି ଅଛି ? କୁହନ୍ତୁ—ଏ ଯୋଉ ଟ୍ରେନିଂ ଆରମ୍ଭ ହେଇଚି ଆମର ଏଠି ଯାର ପ୍ରକୃତ ଲକ୍ଷ୍ୟ କ'ଣ ? ଆମେମାନେ ଯଦି ଚାରିବର୍ଷ ପରେ ଏଠୁ ଡିଗ୍ରୀନେଇ ଫେରିବା ଆମର କର୍ତ୍ତବ୍ୟସ୍ଥଳକୁ, ଅର୍ଥାତ୍, ୱାର୍ଲଡ୍ ଲିଡରସିପ୍ ଟ୍ରେନିଂ ଚାଲିଚି ତ ଏଠି ? ସେତେବେଳେ ଆପଣମାନେ କି ସିଦ୍ଧାନ୍ତ ନେବେ ୟୁ.ଏନ୍.ଓ.ରେ ? କୁହନ୍ତୁ !''

ଏଇ ସମୟରେ ବାଜିଲା ଘଣ୍ଟା । ସକାଳୁଆ କ୍ଲାସ୍ ଘଣ୍ଟା । ସମସ୍ତେ ସତର୍କ ହେଇଗଲେ । ସକାଳୁଆ ଉପତ୍ୟକା ଭ୍ରମଣ ସେଇଠି ସାରିଦେଇ ଦଉଡ଼ ଆରମ୍ଭ କରୁଥାନ୍ତି ସମସ୍ତେ କ୍ଲାସ୍‌ରୁମ୍ ଆଡ଼େ । ହଷ୍ଟେଲ୍‌ଠୁଁ ଅଧ କିଲୋମିଟର ଦୂର ଏକାଡ଼େମିକ୍ ବିଲ୍‌ଡିଂଙ୍ଗସ୍ । ସମସ୍ତେ ତରବର ହେଇ ବାହାରି ଯାଉଥାନ୍ତି ସେଇ ଦିଗରେ ।

ହଠାତ୍ ପଛରୁ ଶୁଣାଗଲା ଡାକ, "ଦିସ୍ ୱେ ପ୍ଲିଜ୍—ଅଲ୍ ଆଟେନ୍‌ସନ୍—ଦିସ୍ ୱେ ପ୍ଲିଜ୍ !"

ବୁଲିପଡ଼ିଲେ ଶହେକୋଡ଼ିଏ ଜଣ ଛାତ୍ରଛାତ୍ରୀ । ସାରା ବିଶ୍ୱରୁ ବଛାବଛା ଛାତ୍ରଛାତ୍ରୀ, ଯାହାଙ୍କ ଚିତ୍ତବୃତ୍ତିର ଉଚ୍ଚତମ ଲକ୍ଷଣମାନଙ୍କୁ ଅନୁସନ୍ଧାନ କରାଯାଇ ଏକତ୍ର କରାଯାଇଥିଲା ଏଇ ବିଶ୍ୱମାନବ ନେତୃତ୍ୱ ତାଲିମ ଶିବିରରେ ପାଖାପାଖି ଦୁଇ ସପ୍ତାହ ତଳେ ।

ଅଦୂରରେ କୋଟ୍ ପ୍ୟାଣ୍ଟ୍ ଟାଇ ଓ ଚକ୍‌ଚକ୍ କଳାରଙ୍ଗର ଜୋତା ହଳେ ସହିତ ମୁହଁରେ ପାଇପ୍ ଧରେଇ ହସହସ ବଦନରେ ଠିଆ ହେଇଥାନ୍ତି ଜଣେ ବୟସ୍କ ଭଦ୍ରଲୋକ । ଚେହେରାରୁ ସ୍ପଷ୍ଟ ବାରିହେଇ ପଡୁଥାନ୍ତି—ୟୁରୋପୀୟାନ୍ ନିଶ୍ଚୟ ଓ ଦିଶୁଥାନ୍ତି ଖୁବ୍ ଜ୍ଞାନୀ ବୁଦ୍ଧିଦୀପ୍ତ ମଧ୍ୟ ।

ଛାତ୍ରଛାତ୍ରୀମାନଙ୍କୁ ତାଙ୍କ ନିକଟକୁ ଆସିବାକୁ ହାତଠାରିଲେ ସେ । ସମସ୍ତେ ଚାଲିଲେ ତାଙ୍କ ପାଖକୁ । ନିକଟକୁ ଆସିଯିବା ପରେ ଅନୁରାଗ ଶୁଣିବାକୁ ପାଇଲା,

"ମର୍ଣ୍ଣିଂ ! ମୋ ନାଁ ଫ୍ରୟଡ୍ । ଆଜିଠୁଁ କ୍ଲାସ୍ ଚାଲିବ୍ ଏଇଠି—ଏଇ ଓପନ୍ ଥିଏଟର୍‌ରେ । ପ୍ରଥମେ ଆରମ୍ଭ ତମମାନଙ୍କ ପାଠ, ସାଇକୋଲଜିରୁ । ପ୍ରୋଗାମ୍‌ରେ ଭେନ୍ୟୁ ଲେଖାଯାଇଥିଲା । କେହି ଦେଖିନ ନିଶ୍ଚେ । ଅଲ୍‌ରାଇଟ୍ । ଆସ ମୋ ପଛରେ । ଯିବା ହେଇ ସେଠିକି—ସେଇ ଲେକ୍ ପାଖକୁ । ଫଲୋ ମି ପ୍ଲିଜ୍..." ଭଦ୍ରଲୋକ ବୁଲିପଡ଼ି ଚାଲିଲେ ଆଗକୁ ଆଗକୁ । ଲେକ୍‌ଟା ପ୍ରାୟ ଅଧମାଇଲିଏ ଆଗକୁ । ମଝିରେ ଛୋଟ ଘଞ୍ଚ ବଣଟିଏ ।

ସମସ୍ତେ ଚାଲିଲେ ଭଦ୍ରଲୋକଙ୍କ ପଛେ ପଛେ । ଅନୁରାଗ ସେପର୍ଯ୍ୟନ୍ତ ଭଲକରି ଶୁଣିପାରି ନ ଥାଏ ଯୋଉ ନାଁଟା ତାଙ୍କର କହିଥିଲେ ସେ ଭଦ୍ରଲୋକ । ତେଣୁ ତା ପାଖେ ପାଖେ ଚାଲୁଥିବା ଜଣକ ମୁହଁକୁ ଅନାଇ ପଚାରିଲା ସେ, "କିଏ ଏ ? କି ନାଁ କହିଲେଟି ?"

"ଓଃ! ଜାଣିନ ୟାଙ୍କୁ ? ମନେ ପଡୁନି ? ନାମ୍ ସେଦିନ ଟି.ଭି.ରେ ଯାହାଙ୍କ ଛବି ପ୍ରଥମେ ଏକ୍‌ଜିବିଟ୍ କଲେ ? ଡଃ ଫ୍ରୟଡ୍ ! ପ୍ରଫେସର ସିଗ୍‌ମଣ୍ଡ୍ ଫ୍ରଏଡ୍ ଏ ସିଓର୍‌ଲି...", ପିଲାଟି ଅନୁରାଗ ମୁହଁକୁ ଚାହିଁଲା । ହସିଦେଇ କହିଲା, "ତମେ ଇଣ୍ଡିଆରୁ ? ଓକେ ମୁଁ ଇଣ୍ଡୋନେସିଆରୁ । ମୋ ନା ମହମ୍ମଦ ବିରାଧୀ ବୀରବର । ତମ ନାଁ ?"

"ମୋ ନାଁ ଅନୁରାଗ", କିନ୍ତୁ ଆଶ୍ଚର୍ଯ୍ୟ ହେଲାପରି ଓଲଟା ପଚାରିଲା ସେ, "ତମ ନାଁ କଅଣ କହିଲ ?"

''ମୋ ନାଁ ମହମ୍ମଦ ବିରାଧୀ ବୀରବର'', ହସିଲା ପୁଣିଥରେ ମିଠା ହସଟିଏ ପିଲାଟି । ଗହମ ରଙ୍ଗର ଦେହର ରଙ୍ଗ ସାଙ୍ଗକୁ ସେ ପିନ୍ଧିଥାଏ ହଳଦୀରଙ୍ଗର ଶାର୍ଟଟିଏ । ଅବିକଳ ଚମ୍ପାଫୁଲ ରଙ୍ଗର । କିନ୍ତୁ ତା ଦେହର ରଙ୍ଗକୁ ଆହୁରି ହଳଦିଆ କରିଦେଉଥାଏ ଶାର୍ଟଟା । ଦିଶୁଥାଏ ଅନେକଟା ଭାରତୀୟ ଭାରତୀୟ ।

ବିରାଧୀ ବୀରବର ନାଁଟା ଶୁଣି ଅନୁରାଗ ମନକୁ ଆସୁଥାଏ ଆଉ କେତେଟା ଶବ୍ଦ—ବିରାଧୀ ବୀରବର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ଶ୍ରୀଶ୍ରୀଶ୍ରୀ...।

ଏସବୁ ଉପାଧି ଓଡ଼ିଶାର ଗଜପତି ରାଜାମାନଙ୍କର ବୋଲି ଭୁଲି ନ ଥାଏ ଅନୁରାଗ । ତେଣୁ ବିରାଧୀର ହାତକୁ ନିଜ ହାତରେ ଧରିନେଇ ସେ କହିଲା, ''ତମ ଇଣ୍ଡୋନେସିଆରେ ବି ଏମିତି ସବୁ ନାଁ ଅଛି ? ଏସବୁ ଆମ ଓଡ଼ିଶାର ଗଜପତି ରାଜା ମହାରାଜାମାନଙ୍କ ଟାଇଟ୍ଲ । ଏମିତି ଆଉସବୁ ନାଁ ଅଛି ତେଣେ ତମ ଦେଶରେ ?''

''ଓଃ! ପ୍ଲେଣ୍ଟି—'' ଅନୁରାଗ ମୁହଁକୁ ଆଉ ଟିକେ ନିଠେଇ କରି ଚାହିଁ ବିରାଧୀ କହିଲା, ''ସୁକର୍ଣ୍ଣ, ସୁହୃତ ତ ଶୁଣିଥିବ । ତା ଛଡ଼ା ଏମିତି ବି ନାଁ ସବୁ ଅଛି—ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା କଳିଙ୍ଗ ଇତ୍ୟାଦି ଇତ୍ୟାଦି ଅନେକ ନାଁ ।''

''ଓଃ,'' ଅନୁରାଗ ଗୋଟାଏ ଜୋର୍ ନିଶ୍ୱାସ ଛାଡ଼ିଲା । କହିଲା, ''ତାହେଲେ ମୁଁ ଏଠି ଏକା ନାହିଁ । ତମେ ମିଳିଗଲ ଭଲ ହେଲା । ତମ ଦେଶରୁ ସେମାନେ ତମକୁ ବାଛି ଖୁବ୍ ଭଲ କରିଚନ୍ତି ।''

''ମୁଁ ବି ଭାବୁଚି ସେଇଆ । ଆମେ ଇଣ୍ଡିଆ, ପାକିସ୍ତାନ, ଶ୍ରୀଲଙ୍କା, ବର୍ମା, ଥାଇଲାଣ୍ଡ, ମାଲେସିଆ, ମାନେ ସାରା ସାଉଥ୍ ଏସିଆ ଆଉ ସାଉଥ୍ ଇଷ୍ଟ୍ଏସିଆ ବାଲା ଏକାଠି ହେବା । ଏ ଯୋଉ ଗୋରା ପଞ୍ଜାକ ଭାରି ଫୁଟାଣି ମାରୁଚନ୍ତି ତାଙ୍କର ମୁକାବିଲାଟାଏ କରିବା ବେଳ ପଡ଼ିଲେ । କ'ଣ ରାଜି ?'' ବିରାଧୀ ପୁଣି ଥରେ ଆଖିରେ ଆଖି ମିଳେଇ ନେଲା ଅନୁରାଗର ।

''ଦେଖିବା—'', ତାପରେ ଅନୁରାଗ ଚାହିଁଲା ସାମ୍ନାକୁ । ହ୍ରଦ ଆଉ ବେଶିବାଟ ନାହିଁ । ବଣର ବଡ଼ଛୋଟ ଗଛ ଗୁଡ଼ିକରେ ଫୁଲଫଳ ଭର୍ତ୍ତି ହେଇଥାଏ । ଚମତ୍କାର ବାସ୍ନାରେ ମହକୁଥାଏ ଚାରିଆଡ଼ । ଗୁଡ଼ିଏ ପାଚିଲା ଫଳ ବି ପଡ଼ିଥାଏ ତଳେ । ନଇଁପଡ଼ି ଗୋଟେଇ ନେଲା ଗୋଟାକୁ ଅନୁରାଗ । ନାକରେ ଲଗେଇଲା । ଭଲ କରି ଶୁଙ୍ଘିଲା । କିନ୍ତୁ ଫଳଟାକୁ ଚିହ୍ନି ପାରୁ ନ ଥାଏ ସେ । ଦିଶୁଥାଏ ଖୁବ୍ ଲୋଭନୀୟ । ଅବିକଳ ଆପ୍ଲପରି ଦେଖିବାକୁ ଯଦିଚ, ତଥାପି ବାସ୍ନାରୁ ଆପ୍ଲ ବୋଲି ଜାଣିପାରିଲା ନାହିଁ ସେ ଜମାରୁ ।

ହିମାଳୟର ଫୁଲଫଳ ଏପରିକି ଗଛର ପତ୍ରକୁ ବି ସାବଧାନ । କୌଣସି ବହିରେ ପଢ଼ିଥିବା କଥା ମନେପଡ଼ିଲା ତା'ର । ହିମାଳୟ ହିମାଳୟ ନୁହେଁ, ଅନେକ ସମୟରେ ଯମାଳୟ ହୁଏ ଅଜଣା ଗଛର ପତ୍ରରେ କି ଫୁଲ ଫଳରେ ହାତ ଛୁଇଁବା ମାତ୍ରେ ।

ଫଳଟିକୁ ତଳକୁ ଫୋପାଡ଼ି ଦେଲା ଅନୁରାଗ ତା ପରେ । ମୁଣ୍ଡ ଉପରେ ଗଛଡାଳରେ ନାନା ପ୍ରକାର ଚଢ଼େଇଙ୍କ କାକଳି । ନାନା ବର୍ଣ୍ଣର ଚଢ଼େଇ ମଧ୍ୟ । ଗୋଟିଏ ଗୋଟିଏ ଚଢ଼େଇଙ୍କ ସ୍ୱର ଶୁଭୁଥାଏ ସତେକି ଚିକ୍‌ଚିକ୍ ସରୁ ରୁପା ତାରଟିଏ ମାଇଲ ମାଇଲ ଦୂରକୁ ଲମ୍ୱିଯାଉଚି—ଚଢ଼େଇଟି ଥରେ ଡାକିଦେବା ମାତ୍ରେ । ଆଉ ଦୂର ପାହାଡ଼ରୁ ଲମ୍ୱି ଆସୁଥାଏ ଜବାବ—ଅବିକଳ ସେଇ ରୁପା ତାରଟା ପରି ।

ହ୍ରଦ କୂଳରେ ପହଞ୍ଚିଗଲେଣି ସମସ୍ତେ । ଆଜି ସକାଳ କ୍ଲାସ୍‌ର ପ୍ରଫେସର୍ ଡଃ ଫ୍ରୟଡ୍ ଗୋଟିଏ ବଡ଼ ଗଛମୂଳେ ଠିଆ ହେଇଥାନ୍ତି ସେତେବେଳକୁ । ତାଙ୍କୁ ଘେରିଗଲେଣି ସମସ୍ତେ । ପହଞ୍ଚିଲା ଅନୁରାଗ । ଠିଆହେଲା ସମସ୍ତଙ୍କ ପଛରେ ।

"ସ୍ୱାଗତମ୍ । ବର୍ତ୍ତମାନ ଠାରୁ ଆଗାମୀ ଛ'ମାସ ପାଇଁ ପ୍ରୋଗ୍ରାମ୍", ଡଃ ଫ୍ରୟଡ୍ ହାତ ହଲେଇ ସମସ୍ତଙ୍କୁ ନିର୍ଦ୍ଦେଶ ଦେଲେ ହ୍ରଦକୂଳର ସୁନ୍ଦର ଗାଲିଚାପରି ଲମ୍ୱିଯାଇଥିବା ସବୁଜ ଘାସ ପଡ଼ିଆଟି ଉପରେ ବସିଯିବାକୁ ଓ ଆଗାମୀ ଛ'ମାସର ପ୍ରୋଗ୍ରାମ୍‌ଟିକୁ ନୋଟ୍ କରିନେବାକୁ । ସମସ୍ତେ ବସିଗଲେ । ପକେଟ୍‌ରୁ ଟିପାଖାତା ଓ ପେନ୍‌ସିଲ୍ ମଧ୍ୟ କାଢ଼ିଲେ ।

"ଆଜିଠାରୁ ଆରମ୍ଭ—'ଯୋଗ' ଟ୍ରେନିଂ । ଯୋଗ କଅଣ, କିଏ ବୁଝିଚ ?" ଡଃ ଫ୍ରୟଡ୍ ତାଙ୍କ ପାଇପ୍‌ଟାକୁ ଥରେ ଝାଡ଼ିଦେଇ ପୁଣି ମୁହଁରେ ଲଗେଇ ଉତ୍ତରକୁ ଅପେକ୍ଷା କଲେ ।

"ୟୁ ମିନ୍ ଯୋଗା ?" ଏ ସ୍ୱର ସେଇ ଆମେରିକାନ୍ ଟୋକା ବିଲ୍‌ର । ଚିହ୍ନିନେଇ ସାରିଥାଏ ତାକୁ ଅନୁରାଗ ।

"ଯୋଗା ନୁହେଁ—ଯୋଗ । ଆହୁରି ଭଲ ହେବ ଯଦି କୁହାଯିବ 'ଯୋଗ'—ଲାଇକ୍ 'ଜେ' ଫର୍ 'ଜୟ' ।" ପାଇପ୍‌ଟା ପୁଣି ହାତକୁ ଫେରିଆସିଥାଏ ପ୍ରଫେସରଙ୍କର ।

"ଆମେ ଜାଣିଚୁ 'ଯୋଗା' ପ୍ରଫେସର ଫ୍ରୟଡ୍ ।" ବିଲ୍ ପୁଣି ଭଡ଼ଭଡ଼ ହେଲା, "ସମ୍ କାଇଣ୍ଡ୍ ଅଫ୍ ଆନ୍ ଏକ୍ସରସାଇଜ୍ ଲାଇକ୍ ଷ୍ଟାଣ୍ଡିଂ ଅନ୍ ୟୋର୍ ହେଡ୍ ଫର୍ ଆୱାରସ୍ ଟୁଗେଦର୍ ଆଣ୍ଡ ଆଣ୍ଡ....ଷ୍ଟପ୍ ୟୋର୍ ବ୍ରେଥ୍ ଫର୍ ଏଭର୍ !"

ବିଲ୍‌ର ଉତ୍ତର ହସେଇଲା ସମସ୍ତଙ୍କୁ ଏକାବେଳକେ । ''ଷ୍ଟପ୍ ବ୍ରେଥ୍ ଫର୍ ଏଭର୍ ? ସବୁ ଦିନ ପାଇଁ ନିଶ୍ୱାସ ବନ୍ଦ ! ମାନେ ଡେଥ୍ ?'' ଗୋରାଙ୍କ ଭିତରେ ହସର ଢୁଆର ଖେଳିଗଲା ।

''ଆମେ ତ ମରିସାରିଚୁ ଅଲ୍‌ରେଡି !'' ତାଙ୍କରି ଭିତରୁ କିଏ ସେ, ବୋଧହୁଏ ଡିକ୍, ସେଇ ବ୍ରିଟିଶ୍ ଟୋକାଟା ପଚାରିଲା ଗମ୍ଭୀର ସ୍ୱରରେ, ''କହନ୍ତୁ ପ୍ରଫେସର ! ଆମେ ଆଜ୍‌ସର୍ ମରିଚୁ ନା ବଞ୍ଚିଚୁ ?''

''ତମେମାନେ ପୂରା ବଞ୍ଚିଚ—'', ହସିଲେ ଡଃ ଫ୍ରୟଡ୍ । ଡିକ୍ ଆଡ଼କୁ ନ ଚାହିଁ ସେ ଚାହିଁଥାନ୍ତି ହ୍ରଦ ଆରପାଖ ପର୍ବତଟାକୁ ସେତେବେଳେ ।

''କିନ୍ତୁ ଆପଣ ବଞ୍ଚିଚନ୍ତି ତ ?'' ଏଥର ପ୍ରଶ୍ନ ଆସିଲା ଗୋଟାଏ ସଂପୂର୍ଣ୍ଣ ଅଜଣା ଓ ଏପର୍ଯ୍ୟନ୍ତ ଅନୁରାଗ ଆଖିରେ ନ ପଡ଼ିଥିବା ଟୋକାଟା ଆଡୁ । ସେ ଦିଶୁଥାଏ ଅନେକଟା ଇଣ୍ଡିଆନ୍ ଇଣ୍ଡିଆନ୍ । ଯଦିଚ ତା ଭାଷାରୁ ଜଣାଯାଉଥିଲା ସେ ହୁଏତ ସ୍ପେନ୍‌ର ଲୋକ ।

''ମୁଁ ବି ବଞ୍ଚିଚି—ଠିକ୍ ଯେମିତି ତମ ମେକ୍ସିକୋର ମୟ ସଭ୍ୟତା ଏଯାକେ ବଞ୍ଚିଚି ମିଃ 'ୟୁକାତାନ' ! ଏ ସେଣ୍ଟର୍‌କୁ ତମମାନଙ୍କୁ ଅଣାଯିବାର ଏକମାତ୍ର ଉଦ୍ଦେଶ୍ୟ—ତମ ମନରୁ ଗୁଡ଼ାଏ ପୁରୁଣା ଅଭ୍ୟାସ ଦୂର କରିବା । ତା ଭିତରେ ସବୁଠୁଁ ଭୟଙ୍କର ଓ ବଦ୍ଧମୂଳ ଅଭ୍ୟାସ ମୃତ୍ୟୁଭୟ । ତମେମାନେ ଅଭ୍ୟାସଗତ ଭାବେ ମୃତ୍ୟୁକୁ ଭୟ କରିଆସିଛ । ଏଟା ତମର ଆନିମଲ୍ ଇନ୍‌ଷ୍ଟିଂକ୍ଟ । ପଶୁମାନେ ଯେମିତି ମୃତ୍ୟୁ ନାଁ ଶୁଣିଲେ ଛାନିଆ ହେଇପଡ଼ନ୍ତି ମଣିଷ ବି ସେଇଆ କରେ । ତମ ମନରୁ ପ୍ରଥମେ ତିନୋଟି ସହଜାତଗୁଣ ଛଡ଼େଇବା ଦରକାର । ଯୋଗର ପ୍ରାକ୍ଟିସ୍ ଆରମ୍ଭ ହବ ସେଇଠୁ ।'' ପ୍ରଫେସରଙ୍କ ଦୃଷ୍ଟି ସେଇ ମେକ୍ସିକାନ୍ ଇଣ୍ଡିଆନ୍ ପିଲାଟି ଉପରୁ ଘୂରିଗଲା ସାରା କ୍ଲାସ୍ ଉପରେ ଏଥର ।

''ବର୍ତ୍ତମାନ, ଆଜିଠୁଁ ଛ'ମାସ ପର୍ଯ୍ୟନ୍ତ ଆମର ଯୋଗ ଟ୍ରେନିଂର ବ୍ୟବସ୍ଥା କହୁଚି ଶୁଣ—'', ଡଃ ଫ୍ରୟଡ୍‌ଙ୍କ ପାଇପ୍ ମୂନ ଓଠରୁ ବାହାରି ଘୂରିବା ଆରମ୍ଭ କରିଦେଲା ବର୍ତ୍ତମାନ ଚାରିଆଡ଼କୁ । ସେଇଠୁ ଶୁଣାଗଲା, ''ଏ ଲ୍ୟାଣ୍ଡ୍ ଓ୍ୱାଟର୍ ମାଉଣ୍ଟେନ୍‌ସ୍ ଫରେଷ୍ଟସ୍ ତମକୁ କେମିତି ଦିଶୁଚି ? ଭେରି ଫ୍ୟାମିଲିଆର୍ ? ନିଜ ନିଜ କଣ୍ଟ୍ରିର କୌଣସି ଚିହ୍ନାଜଣା ଟୁରିଜିମ୍ ସଟ୍‌ପରି ? ଓ୍ୱେଲ୍ ନୋ ! ଏଟା ଆର୍ଥ୍‌ର ପାର୍ଟ ହେଲେ ବି ଏକ୍‌ଜାକ୍ଟଲି ସେଇ ଆର୍ଥ ନୁହଁ ଯାହାକୁ ତମେ ଭାବ ଏଇଟା ମୋ କଣ୍ଟ୍ରି ସେଇଟା ତା କଣ୍ଟ୍ରି ଏଟ୍‌ସେଟ୍ରା ଏଟ୍‌ସେଟ୍ରା । ଏଟା

ପ୍ରକୃତରେ ତମ ଆର୍ଥ୍ ନୁହଁ ଆଦୌ । ଏ ପ୍ଲାନେଟ୍‌ର ବାସିନ୍ଦା ସେଇମାନେ ଯୋଗମାନେ ଇମ୍‌ମର୍ଟାଲ୍ । ତମ ପୃଥିବୀକୁ ଏମିତି ଗୋଟିଏ ସ୍ଥାନରେ ପରିଣତ କରିବାର ଯୋଜନା ଚାଲିଚି ଏଠି । ଯଦି ଏ ଯୋଜନାର ସିଦ୍ଧି ଆସେ ତେବେ ତମେ ପୃଥିବୀକୁ ଫେରି ଏମିତି ଏକ ଚମତ୍କାର ଲ୍ୟାଣ୍ଡ ତିଆରି କରିପାରିବ ସେଠି । ମନେରଖ, ଛ' ବିଲିୟନ୍ ମର୍ଟାଲ୍‌ଙ୍କ ଭିତରୁ କେବଳ ତମେମାନେ ଇ ବଛାଯାଇଛ । ଆଉ ତମ ସଂଖ୍ୟା ଛ' ଶହ ବି ନୁହେଁ; ମାତ୍ର ଷହେ କୋଡ଼ିଏ ! ତମକୁ କୁହାସରିଛି– ପୃଥିବୀକୁ ଫେରିଲେ ତୁମେମାନେ ହେବ ନ୍ୟୁଜେନେରସନ୍ ଲିଡର–ୱାର୍ଲଡ ଲିଡରସ ! ଆମ ପ୍ରୋଗାମ୍‌ରେ ସିନ୍‌ସିଅର୍‌ଲି ପାର୍ଟିସିପେଟ୍ କରିବାକୁ ତମେମାନେ ଇଚ୍ଛା କରକି ?''

''ସିଓର୍ ସିଓର୍ ଡଃ ଫ୍ରୟଡ୍....ବର୍ତ୍ତମାନ କହନ୍ତୁ କ'ଣ କରିବାକୁ ପଡ଼ିବ ଆମକୁ,'' ସାରା କ୍ଲାସ ଏକ ସାଙ୍ଗେ କହିଉଠିଲା ।

''ତାହେଲେ ଶୁଣ ସମସ୍ତେ, ଯୋଗର ପ୍ରଥମ ପାହାଚଟି ହେଲା–ଯମ ବା ଯମ ମାନେ ସେଲ୍‌ଫ୍ ଡିସିପ୍ଲିନ୍ । ତା ଉପରକୁ ଆହୁରି ସାତ ପାହାଚ ଅଛି ଉପରକୁ । ସେସବୁ ବର୍ତ୍ତମାନ ଜାଣି ଲାଭ ନାହିଁ । ଯମ ସବୁଠୁଁ ଡିଫିକଲ୍‌ଟ ଷ୍ଟେପ୍ । ପୁଣି ତା'ର ମୋଷ୍ଟ୍ ଡିଫିକଲଟ୍ ପାର୍ଟଟା ଷ୍ଟାର୍ଟିଂରୁ– ନନ୍‌ଭାୟୋଲେନ୍ସ । ଯୋଗିକ୍ ଭାଷାରେ ଯାକୁ କହନ୍ତି ଅହିଂସା । ଆଜିଠୁଁ ଛ'ମାସ ପର୍ଯ୍ୟନ୍ତ ତମକୁ ରିଗୋରସ୍ ଯୋଗିକ୍ ଜୀବନ ଯାପନ କରିବାକୁ ପଡ଼ିବ । ତମେମାନେ ଆଉ ତମ ହଷ୍ଟେଲ୍‌କୁ ଫେରିବ ନାହିଁ ବୋଲି ପ୍ରତିଜ୍ଞା କର ଏଇଠି, ଏଇ ହ୍ରଦ୍‌କୂଳରେ ।'' ଡଃ ଫ୍ରୟଡ୍ ଆଖି ବୁଲେଇ ନେଲେ ପୁଣିଥରେ ସାରା କ୍ଲାସ୍ ଉପରେ ।

''ଆମେ ଯଦି ହଷ୍ଟେଲ୍‌କୁ ନ ଫେରିବୁ ତେବେ ରହିବୁ କୋଉଠି ? ଖାଇବୁ କୋଉଠି ? ଶୋଇବୁ କୋଉଠି ?'' ଗୁଣୁଗୁଣୁ ଆରମ୍ଭ ହେଇଗଲା ତତ୍‌କ୍ଷଣାତ୍ । ଉତ୍ତର ମିଳିଲା ଡଃ ଫ୍ରୟଡ୍‌ଙ୍କଠାରୁ–

''ଏଇତ ତମ ଗାର୍ଡନ ଅଫ୍ ଏଡେନ୍–ପାରାଡାଇଜ୍ ଆଉ କୋଉଠି କି ?'' ହସିଉଠିଲେ ଡଃ ଫ୍ରୟଡ୍, ''ଏ ଗଛଗୁଡ଼ାକରେ ଏତେ ଫଳ, ହ୍ରଦରେ ଏତେ ଜଳ, ଆଉ ଚିର ବସନ୍ତର ମଳୟ ପବନ ଆଉ ବହୁଚି କ'ଣ ପାଇଁ ? ତମେ କ'ଣ ଭାବୁଚ ଯା ଅପେକ୍ଷା ତମ ହଷ୍ଟେଲ୍ ବେଟର୍ ପ୍ଲେସ୍ ? ବ୍ରେଡ୍, ଏଗ୍, ଚିକେନ୍ ଆଉ କେତେଦିନ ଖାଇବ ୟଙ୍ଗ୍ ଫ୍ରେଣ୍ଡସ୍ ? ମାତ୍ର ଛ'ଟା ମାସ ଆଉଟ୍‌ଡୋର୍ ପ୍ରାକ୍ଟିସ୍ । ପାରିବ ନାହିଁ ? ତେବେ ୱାର୍ଲଡ ଲିଡର୍ ହେବ କେମିତି ?''

"ୱାର୍ଲଡ୍ ଲିଡର୍ ହବାକୁ ହେଲେ ଏସବୁର ଆବଶ୍ୟକ କ'ଣ ? ଆମକୁ କ'ଣ ପୁଣି ସେଇ ଆଦାମ୍ ଇଭ୍ ଅବସ୍ଥାରେ ଲଙ୍ଗଳା ହେଇ ବୁଲିବାକୁ ପଡ଼ିବନା କ'ଣ ବଣରେ ?" ବିଲ୍, ଥର୍, ଡିକ୍ ଏକାବେଳକେ ହସିଉଠିଲେ ଓ ଘୂରିଘୂରି ଚାହିଁଲେ ପୃଥିବୀର ବିଭିନ୍ନ ଦେଶରୁ ଆସିଥିବା ଝିଅମାନଙ୍କଆଡ଼କୁ । ଶହେ କୋଡ଼ିଏ ଜଣଙ୍କ ଭିତରୁ ପ୍ରାୟ ଅଧାଅଧି ଝିଅ ଥାଆନ୍ତି ଓ ନିଜ ନିଜ ଅଞ୍ଚଳର ପୁଅଝିଅଙ୍କ ମେଳରେ ବସିଥାନ୍ତି ପ୍ରାୟ ସୁରକ୍ଷିତ ହେବାପରି ।

"ଏକ୍‌ଜାକ୍ଟଲି ସୋ—", ଡଃ ଫ୍ରୟଡ୍ ମଧ ଆଖି ବୁଲେଇ ନେଲେ ଝିଅମାନଙ୍କ ଉପରେ, ସେମାନଙ୍କ ପ୍ରତିକ୍ରିୟା ଅନ୍ଦାଜ୍ କଲା ପରି । ତାପରେ କଣ୍ଠ ସଫାକରି କହିଲେ, "ତମକୁ ଆଦାମ୍ ଓ ଇଭ୍ ଭଳି ପ୍ରଥମେ ଆରମ୍ଭ କରିବାକୁ ହେବ ମୁକ୍ତ ଅବାଧ ଜୀବନ ଯାପନ ଏଇ ମୁକ୍ତ ଉପତ୍ୟକା ଭିତରେ । କିନ୍ତୁ ଯୋଗ ସାଧନା ସହିତ । ମନେରଖ- ନୋ ସେକ୍ସ ! ନୋ ସେକ୍ସ ଫର ସିକ୍ସ ମନ୍ଥସ୍ ! ଛଟା ମାସ ପାଇଁ ସେକ୍ସ ନ ହେଲେ ବଞ୍ଚିପାରିବ ନା ନାଇଁ ଆଗ ଭାବିକରି କହ ।"

"ନୋ . ସେକ୍ସ ? ଫର୍ ସିକ୍ସ ମନ୍ଥସ!" ବର୍ଣ୍ଣମାନ ଗୋରା ଲୋକଙ୍କ ସାଙ୍ଗେ ମିଶିଗଲା ପ୍ରାୟ ସବୁ କଳା ଲୋକଙ୍କ ସ୍ୱର । ଆମେରିକା, ୟୁରୋପ ଓ ଆଫ୍ରିକା ଏକା ସ୍ୱରରେ କହି ଉଠିଲା,, "ଆମେ ପାରିବୁ ନାଇଁ । ଗିଭ୍ ଅସ୍ ଅଲଟର୍‌ନେଟିଭ୍ ଯୋଗୀ ଡକ୍ଟର ଫ୍ରୟଡ୍ !"

"ଓକେ- ଅଲ୍‌ଟର୍‌ନେଟିଭ୍ ହେଲା ସେଗ୍ରିଗେସନ୍ । ତମମାନଙ୍କୁ ଏକା ଏକା ରହିବାକୁ ହେବ ନିଜ ନିଜ କେଭ୍‌ରେ ସନ୍ନ୍ୟାସୀ ଆସେଟିକ୍‌ମାନଙ୍କ ପରି, ଉଇଲିଂ ?" ଡଃ ଫ୍ରୟଡ଼ ଦେଲେ ତାଙ୍କର ପୂର୍ବ କଳ୍ପିତ ପ୍ରସ୍ତାବ ଓ ଆସେଟିକ୍ ବା ସନ୍ନ୍ୟାସୀ ଶବ୍ଦଟା ଉପରେ ଖୁବ୍ ଜୋର୍ ଦେଇ ଉଚ୍ଚାରଣ କଲେ ମଧ ଶବ୍ଦଟାକୁ ସେ ସେତେବେଳେ ।

"ଓଃ! ଆମେ ସେ ଶବ୍ଦଟାକୁ ଘୃଣାକରୁ ଡଃ ଫ୍ରୟଡ !" ଚିତ୍କାର କଲା ବିଲ୍ ଏଥର ।

ଡିକ୍, ସେଇ ବ୍ରିଟିଶ୍ ପିଲାଟା ମଧ ନିଜକୁ ଆହୁରି ସ୍ପଷ୍ଟ କରିଦେଲା, "ଆସେଟିସିଜମ୍ ଯୋଗୀ- ଏସବୁ ଇଣ୍ଡିୟାନ୍ ପ୍ରିମିଟିଭ୍ ପ୍ରାକ୍ଟିସେସ୍ । ଆପଣ ଡଃ ଫ୍ରୟଡ୍ କ'ଣ ଆପଣଙ୍କ ନିଜ ଥିଓରି ଭୁଲିଗଲେଣି ପୂରାପୂରି ? ଆମେ ସ୍କୁଲ୍‌ରେ ପଢ଼ିଛୁ । ଆପଣ କହିଥିଲେ ନା—ସେକ୍ସ ସପ୍ରେସନ୍ ଲିଡ୍‌ସ ଟୁ ମର୍ବିଡ଼ିଟି ? ଆପଣ ମାଇଣ୍ଡ ଥିଓରି ଦେଇ ନ ଥିଲେ- ଇଦ୍, ଇଗୋ, ସୁପର୍ ଇଗୋ, ଓଡିପସ୍ କମ୍ପ୍ଲେକ୍ସ,

ଇଲେକ୍ଟ୍ରା କମ୍ପେକ୍ସ ଏଟ୍‌ସେଟ୍ରା ଏଟ୍‌ସେଟ୍ରା ? ତାହେଲେ, ଏ 'ଭୁଡୁ' ପ୍ରାକ୍ଟିସ୍ ପାଇଁ କେମିତି ବର୍ତ୍ତମାନ କମ୍ପେଲ୍ କରୁଛନ୍ତି ଆମକୁ ଆପଣ ?''

''ମୁଁ ସେଇ ତମର ପୁରୁଣା ଡଃ ସିଗ୍‌ମଣ୍ଡ ଫ୍ରୟେଡ୍ ନୁହଁ ପ୍ରିୟ ବନ୍ଧୁଗଣ । ମୋର ପୂର୍ବ ଅବତାର ବେଳକୁ ଯୋଗ ନାଁ ଆମେ କାନରେ ଶୁଣିବି ନ ଥିଲୁ । ଆମକୁ କେହି କହି ନ ଥିଲା ଯେ ଆଜିକୁ ଅଢ଼େଇ ହଜାର ବର୍ଷ ତଳେ ପତଞ୍ଜଳି ବୋଲି ଜଣେ ଇଣ୍ଡିଆନ୍ ସ୍କଲାର୍ ସାଇକୋଲଜିକାଲ୍ ସାଇନ୍ସେସ୍‌ରେ ଏତେ ଗଭୀର ରିସର୍ଚ୍ଚ କରିଥଲେ ବୋଲି । ଏଇ ଅବତାରରେ ମୋ ଧାରଣା କ୍ଲିଅର୍ ହେଇଗଲା ଅନେକଟା । ମୁଁ ବି କିଛି କିଛି ସିଦ୍ଧି ହାସଲ କରିପାରିଛି,'' ଡଃ ଫ୍ରୟଡ୍ ପୁଣିଥରେ ଗୁରୁତ୍ୱ ଦେଲେ ସିଦ୍ଧି ଶବ୍ଦଟାର ଉଚ୍ଚାରଣ ଉପରେ ।

''ସିଦ୍ଧି ? ହ୍ୱାଟ୍ ଇଜ୍ ସିଦ୍ଧି ?'' ବିଲ୍ ପଚାରିଲା ଓ୍ୱେଷ୍ଟର୍ଣ୍ଣ ବ୍ଲକ୍ ପକ୍ଷରୁ ।

''ସିଦ୍ଧିର ଅର୍ଥ- ଅଣିମା, ମହିମା, ଲଘିମା, ଗରିମା, ପ୍ରାପ୍ତି, ପ୍ରାକମ୍ୟ, ବଶିତ୍ୱ ଆଉ ଈଶତ୍ୱ !'' ଜାଣି ଜାଣି ଶବ୍ଦଗୁଡ଼ିକୁ ବିଜ୍ଞାନର ଟର୍ମିନୋଲଜିକାଲ୍ ଶବ୍ଦ ପରି ଗୁରୁତ୍ୱର ସହିତ ଉଚ୍ଚାରଣ କରିଗଲେ ଡଃ ଫ୍ରୟଡ୍ ।

କେହି କିଛି ବୁଝିବା ଅବସ୍ଥାରେ ନ ଥିଲେ । ତେଣୁ ଡଃ ଫ୍ରୟଡ୍ ପ୍ରସ୍ତାବ ଦେଲେ, ''ଡିମନ୍‌ଷ୍ଟ୍ରେସନ୍‌ସ ଚାହଁ? ତେବେ ଅପେକ୍ଷା କର ।''

ହଠାତ୍ ଗୋଟାଏ ମିରାକ୍ଲ ନ ଘଟାଇ ଡଃ ଫ୍ରୟଡ୍ ଏକ ଛୋଟିଆ ପ୍ରସ୍ତାବ ଆଗତ କଲା ପରି କହିଲେ, ''ଯୋଗର ମୂଳ ନିର୍ଦ୍ଦେଶ ଏ ସବୁରେ ନ ମାତି ପ୍ରଥମେ ଚରିତ୍ର ସଂଶୋଧନ କର ନିଜର । ତମେମାନେ ସେକ୍ସକୁ ଖୁବ୍ ଇମ୍ପୋଟାଣ୍ଟ୍ ସ୍ଥାନ ଦେଉଛ । କିନ୍ତୁ ଯୋଗ କହେ-ସେକ୍ସ ନୁହେଁ ଲଭ୍ । ଲଭ୍ ଇଜ୍ ଦ ରୁଟ୍ ସବ୍‌ଷ୍ଟାନ୍ସ ଅଫ୍ ଯୋଗ । ଯୋଗର ମୂଳ ପ୍ରେମ । ତମେମାନେ ଲଭ୍ ପ୍ରାକ୍ଟିସ୍ କର ଏଇ ଛ'ମାସ । ମୁକ୍ତ ଭାବରେ ପୁଅଝିଅମାନେ ପରସ୍ପର ସହିତ ମିଶ । କିନ୍ତୁ ସେକ୍ସ ନୁହେଁ; ଲଭ୍.....''

''କିନ୍ତୁ ଆମେ ତ ଜାଣୁ ସେକ୍ସ ଇଜ୍ ଲଭ୍ ଡଃ ଫ୍ରୟଡ୍ ।'', ବିଲ୍ ହସିଲା ବଡ଼ ଜୋର୍‌ରେ ।

''ଠିକ୍ ଅଛି । ପରେ ବୁଝିବ । ବର୍ତ୍ତମାନ ନିଜନିଜର ପାର୍ଟନର ବାଛି ନିଅ-ଆଦାମ୍ ଆଣ୍ଡ ଇଭ୍ ପାର୍ଟନର, କହିପାର ତମେ ତାକୁ । କିନ୍ତୁ ନୋ ସିନ୍ କନ୍‌ସେପ୍ଟ ଇଜ୍ ଓ୍ୱେଲ୍‌କମ୍ । ଲଭ୍‌ରେ ପାପ ନାହିଁ । ପାପ ଥାଏ ସେକ୍ସରେ । ତମେମାନେ ଲଭ୍‌ରେ ଥିବା ଯାକେ ପାପ ତମକୁ ସ୍ପର୍ଶ କରିବ ନାହିଁ ଏକଥା ଅବଶ୍ୟ ସତ୍ୟ ।''

ଡଃ ଫ୍ରଏଡ୍ ଖଣ୍ଡେ ପଥର ଉପରେ ବସିପଡିଲେ । ଅନୁରାଗ ବୁଝିପାରିଲା ନାହିଁ, କ'ଣ କରିବାକୁ ନିର୍ଦ୍ଦେଶ ଦେଲେ ପ୍ରଫେସର । ତେଣୁ ସେ ଅନ୍ୟମନସ୍କ ଭାବେ ହ୍ରଦ ଆଡ଼କୁ ଚାହିଁ ରହିଲା ।

ପାଣିର ରଙ୍ଗ ବଦଳି ଗଲାଣି ଅନେକ ସେତେବେଳକୁ । ସକାଳର ସୂର୍ଯ୍ୟର ସୁନେଲି କିରଣ ହ୍ରଦର ଜଳସ୍ତର ଉପରେ ଗୁଡ଼ିଏ ଅଦ୍ଭୁତ ସ୍ତମ୍ଭ ସୃଷ୍ଟି କରି ସାରିଥାଏ । ମନେହେଉଥାଏ ଯେମିତି ଅସଂଖ୍ୟ ସ୍ୱର୍ଣ୍ଣ ସ୍ତମ୍ଭ ଜଳରାଶି ଗର୍ଭରୁ ମଥାଟେକିଛି ଓ ସେଇ ସ୍ତମ୍ଭଗୁଡ଼ିକର ମଥା ଉପରେ ଥୁଆ ହେଇଛି ସେଇ ବିରାଟ ବିରାଟ ପାହାଡ଼ଗୁଡ଼ାକ ହ୍ରଦ ସେପାରିର । ଅତି ବିଚିତ୍ର ଓ ଅବିଶ୍ୱାସ୍ୟ ଦିଶୁଥାଏ ସେଇ ଦୃଶ୍ୟ ଅନୁରାଗକୁ । କାରଣ ପର୍ବତମାନଙ୍କୁ ନିଜ ନିଜ ମୁଣ୍ଡରେ ମୁଣ୍ଡେଇଥିବା ସେଇ ସ୍ୱର୍ଣ୍ଣ ସ୍ତମ୍ଭଗୁଡ଼ିକ ସ୍ଥିର ହୋଇ ପାରୁନଥାନ୍ତି ଆଦୌ । ପବନରେ ଉଠୁଥିବା ହ୍ରଦ ଉପରିଭାଗ ଜଳର ଢେଉଭଳି ସ୍ତମ୍ଭଗୁଡ଼ିକ ମଧ୍ୟ ତରଙ୍ଗାୟିତ ହୋଇ ଚାଲିଥାନ୍ତି ଅନବରତ । ଅଥଚ ପର୍ବତମାନେ ତଥାପି ସେମିତି ଧ୍ରୁବ ଓ ସ୍ଥିର ଭାବେ ବସି ରହିଥାନ୍ତି, ଦୋଦୁଲ୍ୟମାନ ସ୍ତମ୍ଭଗୁଡ଼ିକରେ ଶିର ଦେଶରେ ।

ହଇଚଇ ଆରମ୍ଭ ହେଇଗଲାଣି ସେତେବେଳକୁ । ପୁଅଝିଅମାନେ ଯେ ଯାହାର ପାର୍ଟନର ବାଛିବାରେ ବ୍ୟସ୍ତ । ସେ ଦିଗକୁ ମୁଣ୍ଡ ଖେଳେଇବାକୁ ଅନୁରାଗ ଉତ୍ସାହ ପ୍ରକାଶ କରିପାରିଲା ନାହିଁ ଆଦୌ ।

ଚୁପ୍ ଚାପ୍ ବସିରହିଲା ସେ ।

ବେଶ୍ କିଛି ସମୟ ପରେ ଡଃ ଫ୍ରଏଡ୍‌ଙ୍କ ଗମ୍ଭୀର ସ୍ୱର ଶୁଭିଲା, ''ଓଭର୍ ? ପାର୍ଟନର୍ ବଛାବଛି ସରିଲା ତ ?''

''ୟେସ୍ ସାର୍...'', ଶୁଣାଗଲା ସମ୍ମିଳିତ ହସଖୁସିର ସ୍ୱର ଉଭୟ ପୁରୁଷ ଓ ନାରୀମାନଙ୍କ ସ୍ୱରରୁ ।

''ଦେନ୍ ମୁଭ୍ ଅନ୍ ! ବଣ ଭିତରକୁ ଯାଇପାର । ହ୍ରଦ କୂଳରେ ବୁଲିପାର । ନାଚିପାର । ଗାଇପାର । ସବୁ କରିପାର । କିନ୍ତୁ- ଲଭ୍ ଇଟ୍ ଅଦର୍ । ନୋ ସେକ୍ସ....ମନେରଖ । ସେକ୍ସ ଇଜ୍ ନଟ୍ ପରମିଟେଡ୍ ନାଓ ।'', ଡଃ ଫ୍ରଏଡ୍ ବସିରହିଲେ ।

ସମସ୍ତେ ଚାଲିଗଲେ । ସମସ୍ତେ ଚାଲିଗଲେଣି ସେଇ ସୁନ୍ଦର ବଣଟି ଭିତରକୁ ଯୋଉଠୁ ସେଇ ଅପୂର୍ବ ସୁବାସିତ ଫଳଟିକୁ ଆବିଷ୍କାର କରିଥିଲା ଅନୁରାଗ ହ୍ରଦକୂଳକୁ ଆସିବା ବାଟରେ ।

କିଛି ସମୟ ପରେ ଡଃ ଫ୍ରୟଡ୍ ଲକ୍ଷ୍ୟ କଲେ ହ୍ରଦ କୂଳରେ ଯୋଡିଏ ତଥାପି ନିଜ ନିଜ ସ୍ଥାନରେ ପଥର ପରି ବସି ରହିଯାଇଛନ୍ତି । ଶୋଇ ଯାଇନାହାନ୍ତି ତ ?

"ହେ ! ୟୁ ବୋଥ୍ ?" ଡଃ ଫ୍ରୟଡ୍ ପ୍ରଥମେ ଆଙ୍ଗୁଠିରେ ଫୁଟ୍‌କି ଫୁଟେଇ ସେ ଦୁଇଟି ପଥରଙ୍କ ନିଦ ଭାଙ୍ଗିବାକୁ ଚେଷ୍ଟା କଲେ ।

କିନ୍ତୁ କିଛି ଫଳ ନ ହେବାରୁ ବେଶ୍ ବଡ଼ ଜୋର୍‌ରେ ତାଳି ମାରିଲେ ଡଃ ଫ୍ରୟଡ୍ । ତଥାପି କୌଣସି ପ୍ରତିକ୍ରିୟା ପଥର ଦୁଇଟାରୁ ନ ଆସିବା ଦେଖି ବିସ୍ମିତ ହେଲେ ସେ । ଉଠିଲେ ନିଜ ଜାଗାରୁ ।

ପ୍ରଥମେ ଅନୁରାଗ ପାଖକୁ ଗଲେ । ତା କାନ୍ଧକୁ ହଲେଇ ଦେଲେ ଟିକେ ଜୋର୍‌ରେ । ଉପରକୁ ଚାହିଁଲା ଅନୁରାଗ । ଦେଖିଲା, ଡଃ ଫ୍ରୟଡ୍ ମଧ ଚାହିଁଛନ୍ତି ତାକୁ ବିସ୍ମିତ ଭାବେ ।

"ୟୁ ଡୋଣ୍ଟ୍ ଲଭ୍ ଦ୍ୟାଟ୍ ଲେଡି ?," ଆଖିରୁ ଏଇ ପ୍ରଶ୍ନ ବାହାରୁଥାଏ ସେତେବେଳେ ଡଃ ଫ୍ରୟଡ୍‌ଙ୍କର । ବୁଝିପାରୁଥାଏ ଅନୁରାଗ ।

"ନା ସାର୍ -", ପୁଣି ମୁହଁ ପୋତିଲା ତଳକୁ ଅନୁରାଗ ।

"କାହିଁକି ?", ଜବାବ ଚାହିଁଲେ ପ୍ରଫେସର୍ ।

"ଜାଣେନା - ", ତଳକୁ ସେମିତି ମୁହଁ ପୋତି ବସିଥାଏ ଖୁଣ୍ଟଭଳି ଅନୁରାଗ ।

ଡଃ ଫ୍ରୟଡ୍ ତାପରେ ଚାଲିଲେ ସେଇ ଅନ୍ୟ ପଥର ଖଣ୍ଡକ ପାଖକୁ ।

"ତମେ ବି କୌଣସି ପାର୍ଟନର ପାଇନ ଏଯାକେ ମିସ୍ ମନ୍‌ସୁର୍ ?", ଡଃ ଫ୍ରୟଡ୍ ଆକର୍ଷଣ କଲେ ସେଇ ଝିଅଟିର ଦୃଷ୍ଟି ।

"ନୋ ସାର୍ . . . . ."

"ହ୍ୱାଇ ?"

"ଡୋଣ୍ଟ ନୋ"

"ହ୍ୱାଟ୍ ଏବାଉଟ୍ ହିମ୍ - ସେଠି ଯେ ବସିଚି, ତମ ପାଇଁ ଅପେକ୍ଷା କରି ?" ଡଃ ଫ୍ରୟଡ୍ ସଜେଷ୍ଟ୍ କଲେ ଏଥର ନିଜ ଆଡୁ ସେଇ ଆଇଡିଆଟା ।

ଏକ ଆଲ୍‌ସିସିଆନ୍ କୁକୁର ହଠାତ୍ ଆକ୍ରମଣ ପାଇଁ ଉଦ୍ୟତ ହେଲେ ଯେମିତି

ଦିଶିଯାଏ ତା ମୁହଁ ଖମାର୍ ମନସୁର୍ ନାମ୍ନୀ ସେଇ ପାକିସ୍ଥାନୀ ଝିଅଟାର ମୁହଁ ସେମିତି ଛାଟି ହେଇଗଲା ଉପରମୁହାଁ । ଡଃ ଫ୍ରୟଡ୍‌ଙ୍କ ପ୍ରତି ଯେତେ ନୁହେଁ, ସେତେ ଅନୁରାଗ ଆଡ଼କୁ ନିକ୍ଷେପ କଲା ସେ ତାପରେ ସେଇ ମନ୍ତବ୍ୟଟା—

"ଆଇ ହେଟ୍ ଦ୍ୟାଟ୍ ଫେଲୋ, ଡଃ ଫ୍ରୟଡ୍....''

"କାହାକୁ ? ସେଇ ପିଲାଟାକୁ ?'', ହସି ଉଠିଲେ ଡଃ ଫ୍ରୟଡ୍, "କାହିଁକି ? କି ଦୋଷ ତାର ?''

"ହିନ୍ଦୁ ! କାଫେର୍ ! ପର୍ମାନେଣ୍ଟ୍ ଏନିମି ଅଫ୍ ମାଇଁ କଣ୍ଟ୍ରି . . . ''

ଉଠିପଡ଼ିଲା ଝିଅଟା । ଏକା ଏକା ବାହାରି ଚାଲିଲା - ହ୍ରଦ କୂଳେ କୂଳେ ଏକା ଏକା ।

ଅନୁରାଗ ବସିରହିଲା ମଧ ଏକା ହୋଇ, ହ୍ରଦ ଜଳକୁ ଧ୍ୟାନ ଦେଇ ।

## [ଚାରି]

ସେମାନେ ଆଉ ହଷ୍ଟେଲ୍‌କୁ ଫେରିଲେ ନାହିଁ । ତାଙ୍କ ପାଇଁ ସ୍ୱତନ୍ତ୍ର ବାସସ୍ଥାନ ନିର୍ମିତ ହୋଇଥାଏ ଉପତ୍ୟକାର ବିଭିନ୍ନ ଅଞ୍ଚଳରେ । ସେଗୁଡ଼ିକ ମଧ କୁଡ଼ିଆ ବା କଟେଜ୍ ଭଳି ନ ଥିଲା । ଗୋଟିଏ ଗୋଟିଏ ଗୁମ୍ଫା ! ଯାହାକୁ ଦେଖିଲେ ମନେହେବ ନିଶ୍ଚିତ ଭାବେ ଅତି ପ୍ରାଚୀନ ବା ସେଗୁଡ଼ିକୁ ସତେବା ତିଆରି କରାଯାଇଥାଏ ସେହିପରି । ଏହିପରି ଏକ ଗୁମ୍ଫାରେ ଦିନଗୁଡ଼ିକୁ ଏକା ଏକା ବିତାଉଥାଏ ଅନୁରାଗ ଯୋଗାଭ୍ୟାସ କରିବା ନିମିତ୍ତ ।

ଦିନ କେତୋଟି ବିତିଗଲାଣି ଚୁପ୍‌ଚାପ୍ । ବଡ଼ ଅଦ୍ଭୁତ ଅଦ୍ଭୁତ ଲାଗୁଥାଏ ତାକୁ ସବୁଆଡ଼ । ମନେ ହେଉଥାଏ ଉପତ୍ୟକାଟି ନିଶ୍ଚିତଭାବେ ଗୋଟିଏ ଅଲଗା ପ୍ରକାର ପଦାର୍ଥରେ ତିଆରି ଏକ ସ୍ୱତନ୍ତ୍ର ବିଶ୍ୱ - ଏହାର ପ୍ରମାଣ ଅନେକ ଥିଲା । କିନ୍ତୁ ସେସବୁ ପ୍ରଥମେ ଦିଶିଲା ସେଇ ନାଲିମୁହାଁ ଡେଙ୍ଗା ନରୱେଜିଆନ୍ ଟୋକାକୁ ସେଦିନ ।

ସେଦିନ ବ୍ରାହ୍ମ ମୁହୂର୍ତ୍ତରୁ ଅନୁରାଗ ଉଠିସାରିଥାଏ । ପହଞ୍ଚିଗଲା ଥର୍ ହେଡର୍‌ଡାହଲ୍ । ପାଟି କରି ଡାକିଲା, "ହେ ମିଃ ଇଣ୍ଡିଆ - ଶୁଣିଲଣି କଅଣ ସବୁ ଘଟିଗଲାଣି ?''

ଅନୁରାଗ ଆସନ ପ୍ରାଣୟାମ ସାରି ତ୍ରାଟକ ଅଭ୍ୟାସ କରିବାକୁ ପଦ୍ମାସନ ପକାଇଥାଏ । ସାମ୍ନାରେ ଦୁଇଫୁଟ ଛଡାରେ, ଗୋଟିଏ ଛୋଟ ଗୋଲାକାର ପଥର ଥୋଇ ସେ ତାକୁ ନିର୍ନିମେଷ ନୟନରେ ଅନାଇ ବସିଥାଏ । ଏଇଟା ହେଲା ମାନସିକ ସ୍ଥିରତା ପାଇଁ ସବାପ୍ରଥମ ପଦକ୍ଷେପ ଯାହାକୁ କୁହାଯାଏ ନିକଟ ବା 'ନିଅର୍' ତ୍ରାଟକ । ଏଥିରେ ଧ୍ୟାନ ପାଇଁ ମନ ନିଜକୁ ନିଜେ ପ୍ରସ୍ତୁତ କରିବାକୁ ଶିକ୍ଷା କରେ । ଆଖି ପତା ନ ପକେଇ କୌଣସି ବସ୍ତୁକୁ ଏକ ଲୟରେ ଚାହିଁ ରହିବାଟାକୁ ଅତି ସହଜ କାମ ବୋଲି ଭାବି ନେଇଥିଲା ମୂଳରୁ ଅନୁରାଗ । କିନ୍ତୁ ଗଲା କେଇ ଦିନ ଭିତରେ ତାର ଅଭିଜ୍ଞତାରୁ ଜାଣି ସାରିଲାଣି ସେ କେଡ଼େ କଷ୍ଟ ଏ କାମ । ପୂରା ଦି'ମିନିଟ୍ ବି ସେମିତି ଅପଲକ ଦୃଷ୍ଟିରେ ସେଇ ଶାଳଗ୍ରାମ ପରି ଗୋଲ ପଥରଟିକୁ ଚାହିଁ ପାରୁ ନ ଥାଏ ସେ । ତା ଆଖିରୁ ପାଣି ବୋହି ପଡୁଥାଏ । ଆଖି ପୋଡୁଥାଏ । ଏଥିରେ ଡକ୍ଟର ଫ୍ରୟଡ୍‌ଙ୍କ ନିର୍ଦ୍ଦେଶ-ଅନ୍ତତଃ ଅଧଘଣ୍ଟାଏ ପର୍ଯ୍ୟନ୍ତ ଏମିତି ଚାହିଁରହ । ଦେଖିବ ତା ଫଳ କଣ । ଏହାପରେ କୁଆଡ଼େ ଅଛି ଦୂର ତ୍ରାଟକ, ସେଇଠୁ ଆନ୍ତର୍ତ୍ରାଟକ । ଦୂର ତ୍ରାଟକରେ କୁଆଡ଼େ ଆଗେ ଅନାଇବାକୁ ପଡ଼ିବ ଗୋଟିଏ ଗଛ ବା ଦୂର ପାହାଡ଼ ଶିଖକୁ ଅଧ ଘଣ୍ଟାଏ ଅପଲକ ନେତ୍ରରେ । ତାପରେ ଚାହିଁବାକୁ ହବ ଆକାଶର ତାରାଙ୍କୁ । ସବାଶେଷରେ ସୂର୍ଯ୍ୟଙ୍କୁ- ପୂରା ଅଧ ଘଣ୍ଟାଏ । ଏସବୁ ପୁଣି ବାହାରିଆ କଥା । ଭିତିରିଆ ସାଧନା ଅଛି ବହୁ ବହୁ ଆଗକୁ ଯେତେବେଳେ କୁଣ୍ଡଳିନୀ ସାଧନା ଆରମ୍ଭ ହେବ । ପୁଣି ଅଛି ହିପ୍‌ନୋସିସ୍ ପ୍ରାକ୍ଟିସ୍, ଷଡ଼ଚକ୍ରଭେଦ ଇତ୍ୟାଦି ।

ଅନୁରାଗ ତା ଗୁମ୍ଫାରେ ବସି ସାଧନା ଆରମ୍ଭ କରୁଥାଏ । ଉପତ୍ୟକାର ଅନେକ ଅଞ୍ଚଳରେ ଏମିତି ସବୁ ଗୁମ୍ଫାମାନ କରାଯାଇଛି ଯୋଗ ସାଧନା ପାଇଁ । ଡଃ ଫ୍ରୟଡ୍ କହୁଥିଲେ- ବହୁକାଳ ପୂର୍ବେ ଏଇ ସବୁ ଗୁମ୍ଫାରେ ବସି ପ୍ରାଚୀନ ମୁନିଋଷିମାନେ ଯୋଗ ସାଧନା କରୁଥିଲେ । କିନ୍ତୁ ଏହା ପୃଥିବୀ ପୃଷ୍ଠରେ ନାହିଁ । ଅଛି ଅନ୍ୟ ଏକ ପ୍ଳେନରେ ଯୋଉଠି ପଦାର୍ଥ ଆସ୍ତେ ଆସ୍ତେ ରୂପାନ୍ତରିତ ହୋଇ ଚାଲିଛି ।

ପଦାର୍ଥର ରୂପାନ୍ତର- ଏ କଥାଟା ଶୁଣିଥିଲା କେବଳ ଅନୁରାଗ ତା ପୂର୍ବାଶ୍ରମରେ । କିନ୍ତୁ ରୂପାନ୍ତର ମାନେଟା କ'ଣ ? କ'ଣ ମାଟିଟା ସୁନା ପାଲଟିଯିବ ? ଗଛଟା ମଣିଷ ପାଲଟିଯିବ ? ମଣିଷ ପାଲଟିଯିବ ଦେବତା ନା ଆଉ କ'ଣ ? ସେ କିଛି ବୁଝିପାରେ ନାହିଁ । ଏବେ ବି ଏଠିକି ଧରାହେଇ ଆସିବା ପରେ ସେ ସେପରି କିଛି ରୂପାନ୍ତର କୋଉଠି ଲକ୍ଷ୍ୟ କରିପାରି ନ ଥିଲା । କିନ୍ତୁ ଡକ୍ଟର

ଫ୍ରୟଡ୍‌ ତାକୁ ଆସ୍ୟୁରାନ୍ସ ଦେଇ କହିଥିଲେ-ତମେ ଭଲ କରି ଲକ୍ଷ୍ୟ କର । ଏଇ ଉପତ୍ୟକାର ମାଟି ପାଣି ପବନ ଗଛ ବୃକ୍ଷ ଏସବୁରୁ ଅନେକ ଲକ୍ଷଣ ଦେଖିବ ଯାହା ପୃଥିବୀପୃଷ୍ଠର ମାଟି ପାଣି ଇତ୍ୟାଦିଠୁଁ ଢେର ଅଲଗା ।

ଅନୁରାଗ ସେପର୍ଯ୍ୟନ୍ତ କିଛି ଟେର୍‌ ପାଇ ନ ଥିଲା ସେ ସବୁର । କିନ୍ତୁ ସେଦିନ ଗୁମ୍ଫା ଦ୍ୱାର ଦେଶରେ ଠିଆ ହେଇ ସେଇ ନରୱେଜିଆନ୍‌ ଟୋକା ଯେତେବେଳେ ତାକୁ ଚମକେଇ ଦେଇ କହିଲା, ‘‘ମିଃ ଇଣ୍ଡିଆ ବାହାରକୁ ଆସ । ଶୁଣିଲଣି କଅଣ ହେଲାଣି ?’’

ଅନୁରାଗ ଉଠିଗଲା ଗୁମ୍ଫା ବାହାରକୁ । ହଠାତ୍‌ ତା ନଜର ପଡିଲା-ଥର୍‌ହେଡରଡାହଲ୍‌ ଠିଆ ହେଇଚି-ଷ୍ଟାର୍କ ନେକେଡ୍‌ ! ଅଦ୍ଭୁତ ଲଙ୍ଗଳା !

ତା ଆଡ଼କୁ ଚାହିଁପାରିଲା ନାହିଁ ଅନୁରାଗ ଲାଜରେ । ତା ଆଖି ବୁଜି ହେଇଗଲା ।

‘‘ବର୍ତ୍ତମାନ ଆମ ଅବସ୍ଥା ଏହିପରି ମିଃ ଇଣ୍ଡିଆ !’’, ହୋ ହୋ ହେଇ ହସିଉଠିଲା ଥର୍‌, ‘‘କହିଲା, ଏକା ମୁଁ ନୁହେଁ । ଆମେ ସମସ୍ତେ । ଗଲା କାଲି ରାତିରୁ ଏ ଅବସ୍ଥା ଆମ ସମସ୍ତଙ୍କର । ପ୍ୟାଣ୍ଟସାର୍ଟ ଜୋତା ମୋଜା-ସମସ୍ତେ ସାପ ପାଲଟିଗଲେଣି । ସର୍‌ସାର୍‌ ଖସି ପଳେଇଲେଣି କୁଆଡେ ନାଇଁ କୁଆଡେ । ମୁଁ ମୋ ପ୍ୟାଣ୍ଟ୍‌ଟାକୁ ଠାବ କଲି ଖୋଜି ଖୋଜି ଗୋଟାଏ ଗଛଡାଳରେ । ପୂରା ସାପ ! ସୁ ସୁ ହଉଚି ମତେ ଦେଖି । ଆସ ଦେଖିବ । ବେଶି ଦୂରରେ ବି ନାହିଁ । ଏଇ, ତମ ଗୁମ୍ଫା ନିକଟରେ ।’’

‘‘ଥର୍‌ !’’, ଆଖି ଉଠେଇ ଲୋକଟାର ଉଲଗ୍ନତାକୁ ଏଥର ନିରୀକ୍ଷଣ କଲା ଅନୁରାଗ । ପଚାରିଲା, ‘‘ସତ କହୁଚ ? ଚାଲ ତ ଦେଖିବା !’’

ଲଙ୍ଗଳା ଥର୍‌ ସାଙ୍ଗରେ ପ୍ୟାଣ୍ଟ୍‌ ପିନ୍ଧା ଅନୁରାଗ ଚାଲିଲେ ଦୁହେଁ କିଛିବାଟ ଆଗକୁ ।

‘‘କୋଉଠି ସେ ଗଛ ?’’, ଅନୁରାଗ ପଚାରୁଥାଏ ଥର୍‌କୁ ଢେରାକଲା ପରି, ‘‘ତମେ ଏକା ନା ଅନ୍ୟମାନଙ୍କର ଏଇ ଅବସ୍ଥା ?’’

‘‘ଏଭ୍ରିୱାନ୍‌—ଏକ୍ସସେପ୍ଟ ଫିଓ !’’, ଗମ୍ଭୀର ସ୍ୱରରେ କହୁଥାଏ ଥର୍‌, ‘‘ଅଲ୍‌ ୱେଷ୍ଟର୍ଣ୍ଣର୍‌ସ ବର୍ତ୍ତମାନ ଲଙ୍ଗଳା ! କେବଳ ତମେ କେଇଟା ଇଷ୍ଟର୍ଣ୍ଣରଙ୍କୁ ବାଦ୍‌ ଦେଲେ ଅନ୍ୟ ସମସ୍ତେ ଭୋଗୁଚନ୍ତି ଏଇ ଦଣ୍ଡ ।’’

"ଆଉକିଏ ?", ଥର୍‌ଠୁ ଟିକିନିଖି ବିବରଣୀ ଆଦାୟ କରିବା ଉଦ୍ଦେଶ୍ୟରେ ପଚାରିଲା ଅନୁରାଗ, "ଚାଓ—ସେ ଚାଇନିକ୍ ପିଲା ? ପୁଣି ମହମ୍ମଦ ବିରାଧୀ ବୀରବର—ଇଣ୍ଡୋନେସିଆନ୍ ? ଏମାନେ କ'ଣ ସମସ୍ତେ ଲଙ୍ଗଳା ହେଇ ବୁଲୁଛନ୍ତି ବର୍ତ୍ତମାନ ?"

ଥର୍ କଣେଇ କଣେଇ ଚାହିଁଲା ଅନୁରାଗ ଆଖିକୁ । ହସିଲାଭଳି ଆଖିରେ ଥରେ ଚାହିଁ ଦେଇ ପଚାରିଲା, "ମୁଁ ଜାଣେ ତମେ କାହା କଥା ପଚାରିବାକୁ ଚାହଁ !"

"କିଏ ? କାହା କଥା ?", ହସିଲା ନାଇଁ ଅନୁରାଗ । କାରଣ ଥର୍ କ'ଣ କହିବାକୁ ହଙ୍କହଙ୍କ ହଉଥାଏ ହଠାତ୍ ବୁଝିଗଲା ସେ ।

'ତମେ ସେ ପାକିସ୍ତାନୀ ମାଷ୍ଟ୍ରାଣୀଟା କଥା ପଚାରୁ ନାହଁ ତ ?", ଜୋର୍‌ରେ ହସିଉଠିଲା ଥର୍ । ଥର୍‌ର ଉଲଗ୍ନ ପୁରୁଷାକାର ସତେକି ପରିହାସ କରିବାକୁ ଉଦ୍ୟତ ଓ ଉତ୍ସୁକ, କୌଣସି ଏକ ଗୁପ୍ତ ଖବର ଦେବାପାଇଁ ଅନୁରାଗକୁ । ସେହିପରି ଅନୁଭବ ହେଲା ଅନୁରାଗର ।

ହଠାତ୍ ଥର୍ ସେ ଗୁପ୍ତ ତଥ୍ୟଟି ପ୍ରକାଶ କରିଦେଲା, "ସେ ଝିଅଟା ବର୍ତ୍ତମାନ ଆଉ ମଣିଷ ପରି ଦିଶୁନି, ଜାଣ ? ଗଲା ରାତିରେ ତାର ବି ପରିବର୍ତ୍ତନ ଘଟିଯାଇଛି—ମାନେ ଟ୍ରାନ୍ସଫର୍ମେସନ୍ !"

ଅନୁରାଗ ଭାବିଲା ବୋଧହୁଏ ଥର୍ କହିବ ଯେ ଖମାର୍ ମଧ ସମସ୍ତଙ୍କ ପରି ବର୍ତ୍ତମାନ ଲଙ୍ଗଳା ! ତା ସାଲୁଆର୍ କାମିଜ୍ ଆଉ ଓଢ଼ଣି—ସାପ ପାଲଟି ବଣକୁ ପଳେଇ ଗଲେଣି ।

କିନ୍ତୁ ନା । ଥର୍‌ର ମନ୍ତବ୍ୟ ଥିଲା ଆହୁରି କ୍ରୁର । କହିଲା ସେ ଶେଷରେ, "ସେ ବର୍ତ୍ତମାନ ସତରେ ଗୋଟିଏ କୁକୁର ପାଲଟିଗଲାଣି ମିଃ ଇଣ୍ଡିଆ ! ଅବିକଳ ଏକ ବିରାଟ ଧଳା ଆଲ୍‌ସେସିଆନ୍ ବିଚ୍ !"

ସ୍ତବ୍ଧ ହୋଇ ଠିଆ ହେଇ ପଡ଼ିଲା ଅନୁରାଗ । ହଠାତ୍ ଗୋଟାଏ ଶକ୍ତ ଧକ୍କା ଦେଲା କିଏ ତା ମସ୍ତିଷ୍କର କୌଣସି ବନ୍ଦ୍ ଝରକାଟା ଉପରେ । ଧଡ଼୍‌କିନା ଖୋଲିଗଲା ଝରକାଟା ।

ସେ ଦୁହେଁ ତା ପରେ ଚାଲିଲେ ଉପତ୍ୟକାର ଗଛଗୁଡ଼ାକ ଉପରେ ସାପ ପାଲଟି କୋଉଠି ଥର୍, ବିଲ୍, ଡିକ୍ ପ୍ରଭୃତିଙ୍କର ଜିନ୍ ପ୍ୟାଣ୍ଟ,ଟି ସାର୍ଟ ଇତ୍ୟାଦି ଝୁଲୁଥିଲେ, ଦେଖିବାକୁ ।

କିନ୍ତୁ ଅନୁରାଗ ମୁଣ୍ଡର ଖୋଲାଝରକାରେ ଦେଖିବାକୁ ପାଇଲା ତା ପିଛିଲା ଜୀବନର ଅନେକ ଘଟଣା ସମ୍ବଳିତ ସେଇ ମର୍ମନ୍ତୁଦ ଦୃଶ୍ୟଟାକୁ ।

ମୁଖ୍ୟ ଘଟଣାଟା ସେଇଦିନ ଉପରଓଳି ଘଟିଥାଏ—ଯୋଉଦିନ ଅନୁରାଗକୁ ତାଙ୍କ ସହରର ·ରାସ୍ତା ଉପରୁ ଉଠେଇ ଅଣାଯାଇଥିଲା ସେଭଳି ବିଚିତ୍ର ଢଙ୍ଗରେ । ମନେ ପକାଉଥାଏ ଘଟଣାଟାକୁ ସେ, ବାଟ ଚାଲୁ ଚାଲୁ ଥର୍ ପଛରେ ।

ସେଦିନ ଶନିବାର । ବାପା ଘରେ ଥିଲେ । ବାପାଙ୍କ ମୁଡ୍ ଭଲ ଥାଏ । ମା'ର ବି । ଅନ୍ୟଦିନ ପରି ବାପାମାଙ୍କର କଳିଫଳି ନ ଥାଏ । ଆଉ ସାନ ଦି ଭଉଣୀ ନୀଲି, ମିଲି ସେଦିନ ସ୍କୁଲ୍‌ରୁ ଶୀଘ୍ର ଫେରିଆସିଥାନ୍ତି । ହସଖୁସ୍ ଲାଗିଥାଏ ଘରେ । ନୀଲି ମିଲି ଘରେ ଥିଲେ ଘର ପୂରିଯାଏ, ତାଙ୍କ ହସ ପରିହାସ ଥଟ୍ଟା ତାମସାରେ । ସେମାନଙ୍କର ମୁଖ୍ୟ ଶରବ୍ୟ ତାଙ୍କ ସାଙ୍ଗରେ ପଢୁଥିବା ଏକ ଝିଅ । ନୀଲି ମିଲି ସେଇ ଝିଅଟିକୁ ନେଇ ଥଟ୍ଟା କରନ୍ତି ନିଜ ନିଜ ଭିତରେ । ମଝିରେ ମଝିରେ ଅନୁରାଗକୁ ବି ମିଶାନ୍ତି ସେଥିରେ । ନୀଲି ପଚାରେ, "ଭାଇ ତମେ ଏଡ଼େ ମାଇଚିଆ ! ଛିଃ ତମକୁ କେହି ବାହାହେବେ ବୋଲି ଭାବୁଚ ତମେ ?"

"ମୁଁ ତ ବାହାଫାହା ହେବି ନାହିଁ ବୋଲି କହିଦେଇଚି ତମକୁ । ପୁଣି କାହିଁକି ସେଇ ବାହାହବା କଥା ? ତମମାନଙ୍କୁ କ'ଣ ଆଉ କିଛି କଥା ଆସେ ନାଇଁ ?" ଅନୁରାଗ ତାଗିଦ୍ କରେ ଭଉଣୀ ଦୁହିଁଙ୍କୁ ।

"ସେ କଥା ନୁହଁ । ତମେ ଝିଅଙ୍କ ମୁହଁକୁ ଚାହିଁ ପାରନା । ତମେ ଏଡ଼େ ମାଇଚିଆ ହେଲ କେମିତି ଯେ ? ମୋ ସାଙ୍ଗ କହୁଚି ତମେ ଏକେବାରେ ମାଇଚିଆ...", ନୀଲି ଆରମ୍ଭ କରେ ଫାଜିଲାମି ।

"କୋଉ ସାଙ୍ଗ ତୋର ?", ଧମକେଇ ଦିଏ ନୀଲିକୁ ଅନୁରାଗ ।

"ତମେ ଜାଣିନ ? ତମେ ପରା ନିଜେ କହୁଥିଲ ସେ ଭାରି ଇଣ୍ଟେଲିଜେଣ୍ଟ ! ଖୁବ୍ ସୁନ୍ଦରୀ ?", ମିଲି, ନୀଲି ପଟ ନେଇ ଧମକେଇ ଦିଏ ତା ଭାଇକୁ ।

"ଚୋପ୍ ! ମୁଁ କହିଚି ? ଦେଖିବୁ ଏଇକ୍ଷିଣା ? ଦେବି ଗୋଟାଏ ଚଟକଣା ଯେ—", ଥଟ୍ଟାରେ ଉଠିଯାଏ ଅନୁରାଗର ହାତ ମିଲି ଉପରକୁ ।

ମିଲି ବି ଥଟ୍ଟାରେ କାନ୍ଦିବା ଅଭିନୟ କରେ । କହେ, "ନାରୀ ଜାତି ଉପରେ ଖୁବ୍ ଅତ୍ୟାଚାର କଲଣି ତୁମେ ପୁରୁଷ ଜାତି । ଖବରଦାର୍ ଭାଇ । ଏ ଘରେ ରହିବା ଅସମ୍ଭବ ଏଣିକି ।"

"ହଉ ଆସୁଆସୁ ସେ କୁକୁରୀ । ଦବ ଯେ ତମକୁ ଥଣ୍ଡା କରି—" ବଡ଼ଭଉଣୀ ନୀଲି ହସି ହସି ଗଡ଼ିଯାଏ ।

"କୋଉ କୁକୁରୀ ?", ଆଶ୍ଚର୍ଯ୍ୟ ହୁଏନା ଅନୁରାଗ । ବରଂ ବିରକ୍ତ ହୁଏ ସେ ଶବ୍ଦଟା ଶୁଣି । କାରଣ ସେ ଜାଣେ ନୀଲି ମିଲି କାହାକୁ ଉପଲକ୍ଷ୍ୟ କରି କହୁଥାନ୍ତି ସେ କଥାଟା । ସେଇ ଝିଅଟି—ଯେ ଅନେକ ସମୟରେ ଆସେ ତାଙ୍କ ଘରକୁ । ତା ନାଁ ପ୍ରେଟି । ଖୁବ୍ ସୁନ୍ଦରୀ । ଗୋରା ତକତକ । ବଡ଼ବଡ଼ ଆଖି । ପତଳୀଟିଏ । କିନ୍ତୁ ଖୁବ୍ ସ୍ମାର୍ଟ । ମସ୍ତ ମସ୍ତ ଯୋଡ଼ିଏ ବେଣୀ । ଝୁଲୁଥାଏ ଆଗ ପଟକୁ । ନୀଲି ମିଲିଙ୍କ ସାଙ୍ଗ ସେ । ପଢ଼େ ଟେନ୍ଥ୍‌ରେ । ନୀଲି ମିଲିଙ୍କ ସାଙ୍ଗରେ । ଏକା କ୍ଲାସରେ । ଅନୁରାଗଠୁଁ ତିନିବର୍ଷ ସାନ ନିଶ୍ଚେ ସେ । କାରଣ ଅନୁରାଗ ବର୍ତ୍ତମାନ ପ୍ଲସ୍‌ଟୁ ପାସ୍ କରି ପଢ଼େ ବି.ଏସ୍‌ସି. ପ୍ଲସ୍‌ଥ୍ରୀ ଫାଷ୍ଟଇୟରରେ । କିନ୍ତୁ ସେ ପ୍ରିପେୟାର୍ କରୁଥାଏ ମେଡ଼ିକାଲ କୋର୍ସପାଇଁ । କୋଚିଂ ସେଣ୍ଟର୍‌ରେ କୋଚିଂ ନିଏ ସେ ସେଥିପାଇଁ ।

"କୋଉ କୁକୁରୀ ? ସେଇ କୁକୁରୀ— ଯେ ତମଠୁଁ ଅଙ୍କ ବୁଝିବାକୁ ଆସେ । ସାଇନ୍ସ ବୁଝିବାକୁ ଆସେ ଏତେ ଆଗ୍ରହରେ । ଆଉ ତମେ ତାକୁ ଅଙ୍କ ବୁଝେଇଦିଅ । ସାଇନ୍ସ ବୁଝେଇ ଦିଅ । କିନ୍ତୁ ଥରେ ବି ଆଖିଟେକି ଚାହିଁ ପାରନା ତା ମୁହଁକୁ । ସେଇଥିପାଇଁ ସେ ଯାଇ ଆମ ସାଙ୍ଗଙ୍କୁ କ୍ଲାସରେ କହେ ଯେ ନୀଲିମିଲିଙ୍କର୍ ଗୋଟାଏ ଭାଇ ଅଛି । ସେଟା ପୂରା ମାଇଚିଆ ।" ନୀଲି କିରିକିରି ହେଇ ହସେ ।

"ଆଉ ସେଟା ନିଜେ ଭାରି ଭଲ ? ତାକୁ ତ ଗାଡ଼ିରେ ଧରି ଟାଉନ୍‌ସାରା ଟୋକା ବୁଲନ୍ତି । ଦିନେ ତାକୁ ବାହାର କରାଗଲା ମନ୍ତ୍ରୀଙ୍କ ଘରୁ । ମନ୍ତ୍ରୀଙ୍କ ପୁଅ ତାକୁ ଉଠେଇନେଇ ପୂରେଇଥିଲା ପରା ତାଙ୍କ ଘରେ ?" ମିଲି ବି ହସେ କିରିକିରି ହେଇ ।

ନିଜ ସାଙ୍ଗ ନାଁରେ ନୀଲିମିଲିଙ୍କ ଏଭଳି ଅପପ୍ରଚାର ଶୁଣିଲେ ଅନୁରାଗ ଦେହରେ ନିଆଁ ଲାଗିଯାଏ ।

"ସଟ୍ ଅପ୍ ! କାଇଁ ମିଛ ଗପୁଚ ? କୋଉ ମନ୍ତ୍ରୀଙ୍କ ପୁଅ ସେ ?" ରଡ଼ିକରେ ଅନୁରାଗ ।

"କୋଉ ମନ୍ତ୍ରୀ ? ପଶୁସ୍ବାନ ବାବୁ । ବାପାଙ୍କ ସାଙ୍ଗ । ଶିଶୁବଳି ପକେଇ ମନ୍ତ୍ରୀ ହେଇଚନ୍ତି ତିନିତିନି ଥର । ବାପା ତ କହୁଚନ୍ତି ତମେ ଡାକ୍ତରି ପାଶ୍ କରିଆସିଲେ ତାଙ୍କରି ଝିଅସାଙ୍ଗେ ବାହାଘର କରେଇବେ ତମର," ନୀଲି ହସୁଥାଏ ମିଲିକୁ ଆଖିମାରି ।

"ପଶୁଶ୍ୱାନ ମାନେ ? ଏମିତି ନାଁର ମନ୍ତ୍ରୀ ଅଛି କିଏ ?" ଆଶ୍ଚର୍ଯ୍ୟ ହେଲା ଅନୁରାଗ । ତାକୁ ହସ ଲାଗିଲାବି ସେମିତି ଅଦ୍ଭୁତ ଶବ୍ଦଟାଏ ଶୁଣି ।

"ଅଛନ୍ତି । ପଶୁପତି ଶ୍ୱାନ । ଲେବର ମିନିଷ୍ଟର୍ । ବାପାଙ୍କର ଭାରି ସାଙ୍ଗ । ଦିହେଁ ଥିଲେ ତ ଏକା କାରଖାନାରେ । ଦିହେଁ ଶ୍ରମିକରୁ ଶ୍ରମିକ ନେତା ହେଲା ପରେ ପଶୁଶ୍ୱାନ ବାବୁ ମନ୍ତ୍ରୀ ହେଲେ । ତିନୋଟି ଆଦିବାସୀ ପିଲାଙ୍କୁ ଧରିନେଇ ବଳି ପକେଇଲେ; କୋଉ ଠାକୁରାଣୀ ପାଖେ । ସେ ମନ୍ତ୍ରୀ ହେଲେ । ବାପା ରହିଗଲେ । ପଶୁଶ୍ୱାନ ତାଙ୍କୁ କହିଲେ— ଆରେ ଓଲୁ, ତୁ ବି ପକା ବଳି । କ'ଣ ପିଲା ଅଭାବ ? ଶହେଟଙ୍କାରେ ପିଲା କିଣିଦେବି ତତେ ମୁଁ କଳାହାଣ୍ଡିରୁ । ବାପା ରାଜିହେଲେ ନାଇଁ । କାହିଁକି ଯେ—" ମିଲି ଓଠ ଲମ୍ବାଏ ରାଗରେ ବାପାଙ୍କ ମୂର୍ଖତାକୁ ।

"ଛାଡ଼ ସେ କଥା—" ଅନୁରାଗର ମନ ସାଢ଼େ ନ ଥାଏ । ଥାଏ ମୀଲି ମିଲିଙ୍କ ମୁହଁରୁ ଆଉ ଟିକେ ପ୍ରେଟି ବିଷୟରେ ଶୁଣିବାକୁ । କିନ୍ତୁ ପ୍ରେଟିକୁ ମନ୍ତ୍ରୀ ପଶୁଶ୍ୱାନଙ୍କ ଘରୁ ଆବିଷ୍କାର କଥାଟା ଶୁଣିଲା ବେଳୁ ତା ମନ ମରିଯାଇଥାଏ । ସନ୍ଦେହରେ ପଡ଼ି ଯାଇଥାଏ ଅନୁରାଗ । ପୁଣି ଅହେତୁକ ରାଗ ବି ଜାତ ହଉଥାଏ ତା ମନରେ— ମନ୍ତ୍ରୀଙ୍କ ପୁଅ ଉପରେ । ସେଇ ଲଫଙ୍ଗା ଟୋକାଟାକୁ ଜାଣେ ବି ସେ । କଲେଜକୁ ମାରୁତି କାର୍ ନେଇ ଆସେ । ଝିଅମାନଙ୍କୁ ନେଇ ଟାଉନ୍ ଘୂରେ । ବହ୍ମାତ୍ ଝିଅଗୁଡ଼ାଏ ବି ଥାଆନ୍ତି । ମନ୍ତ୍ରୀପୁଅ ଗାଡ଼ିରେ ବୁଲିବାକୁ ଭାରି ସଉକ୍ ତାଙ୍କର । କିନ୍ତୁ ପ୍ରେଟି ! ପ୍ରେଟିତ ସେମିତି ନୁହେଁ । ତା'ର ମ୍ୟାଥ୍‌ମ୍ୟାଟିକ୍ସ ଟାଲେଣ୍ଟ ଦେଖିଛି ଅନୁରାଗ । ଅବାକ୍ ହେଇଚି । ଥରେ ତିନିଟା ସଂଖ୍ୟାକୁ ଆଉ ତିନିଟା ସଂଖ୍ୟାରେ ଗୁଣୁଗୁଣୁ ଗୁଣଫଳ ଗୁଣନ ସରିବା ଆଗରୁ ଧଡ଼୍‌କିନା କହିଦେଇ ଅବାକ୍ କରିଥିଲା ପ୍ରେଟି ଅନୁରାଗକୁ । ତାପରେ ପ୍ରେଟିକୁ ଚାରିଟା ସଂଖ୍ୟାର ଗୁଣନ ପଚାରିଲା ଅନୁରାଗ— ତଳେ ଚାରି, ଉପରେ ଚାରି । ପଟାକ୍‌କିନା ଆସିଲା ପ୍ରେଟିର ଉତ୍ତର । ଅନୁରାଗ କାଲ୍‌କୁଲେଟର୍ ନେଇ ପରୀକ୍ଷା କଲା । ଏକେବାରେ ଠିକ୍ ! ଏକଥା କେମିତି ସମ୍ଭବ ବୋଲି ପ୍ରେଟି ମୁହଁକୁ ଚାହିଁଲା ମାତ୍ରେ ଅନୁରାଗ ପଡ଼ିଗଲା ତା ପ୍ରେମରେ । ତା' ପରଠୁଁ ଆଉ ଚାହିଁ ପାରିନି ସେ ପ୍ରେଟି ମୁହଁକୁ ସିଧା କରି କେବେ ବି । କିନ୍ତୁ ସେଇ ପ୍ରେଟିକୁ ନେଇ ମନ୍ତ୍ରୀପୁଅ କ'ଣ କରୁଥିଲା ତାଙ୍କ ଘରେ ? ସନ୍ଦେହ କୁହୁଳିଲା ତା ମନରେ । ସନ୍ଦେହ ମୁକ୍ତ ହବାକୁ ଇଚ୍ଛା କରି ପ୍ରେଟି ବିଷୟରେ ପୁଣି ଗୋଟାଏ ପ୍ରଶ୍ନ ନିଜ ଆଡୁ ପଚାରିଦେଲା ଅନୁରାଗ," ସତ କହୁଚ ? ପଶୁଶ୍ୱାନଙ୍କ ଘରୁ ପ୍ରେଟିକୁ ପାଇଲେ ? କିଏ ?"

ହୋ ହୋ ହେଇ ତା'ପରେ ଦୁଇଭଉଣୀ ହସି ହସି ଗଡ଼ିଗଲେ । ନୀଲି କହିଲା, "ପ୍ରେଟି ତମର ଆଉ ପ୍ରେଟି ହେଇ ନାହିଁ ଭାଇ । ସେ ବର୍ତ୍ତମାନ କୁକୁର ପାଳଟିଗଲାଣି । ଏଇଲେ ସେ କ'ଣ କରୁଚି ଜାଣ ? 'ଏ' କ୍ଲାସ ପପ୍ ସିଙ୍ଗର୍ ସେ ବର୍ତ୍ତମାନ । ମିଶିଚି ଗୋଟାଏ ମେଲୋଡ଼ି ପାର୍ଟିରେ । ମଡ଼େଲିଂ ବି କରୁଚି । ଦିଶୁଚି କାହାଭଳି କହିଲ ? ଅବିକଳ ଗୋଟାଏ ଧଳା ଆଲ୍‌ସିସିଆନ୍ । ଗୀତ ବୋଲିଲା ବେଳେ ଆଁ କରୁଚି ଏଡ଼େ ଜୋର୍‌ରେ ଯେ ତମେ ଦେଖିଲେ ନିଶ୍ଚେ କହିବ— କାମୁଡ଼ି ପକେଇବ ନିଶ୍ଚେ ତା ପାଖକୁ ଗଲେ...."

"ଭାଇ," ମିଲି ଅଳି କରିବା ସ୍ୱରରେ କହେ, "ଶୁଣୁଚି ମାଇକେଲ୍ ଜ୍ୟାକ୍‌ସନ୍ ଆସୁଚନ୍ତି ଦିଲ୍ଲୀ । ଆମେ ଦେଖନ୍ତେ ନାଇଁ ? ଚାଲ ଯିବା ଦିଲ୍ଲୀ । ତିନିଟା ଟିକେଟ୍ ଖର୍ଚ୍ଚ କରି ପାରିବ ? ତମେ ମୁଁ ନୀଲି ଯାଆନ୍ତେ...."

"ନାଇଁ ନାଇଁ ମୁଁ ଯିବିନି— ପ୍ରେଟିକୁ ନେଇ ତୁ ଯା ଭାଇଙ୍କ ସାଙ୍ଗରେ—" ମିଲି ପୁଣି ଚିଡ଼ାଏ ।

ମାଇକେଲ୍ ଜ୍ୟାକ୍‌ସନ ନାଁ ଶୁଣିଲେ ଅନୁରାଗ ଚିଡ଼ିଯାଏ । ଏଇଠୁ ଆରମ୍ଭ ହେଲା ସେଦିନ ତା ଦୁର୍ଦ୍ଦଶା ।

"ତମେ ଝିଅମାନେ ମାଇକେଲ୍ ଜ୍ୟାକ୍‌ସନ ମାଇକେଲ୍ ଜ୍ୟାକ୍‌ସନ୍ ଏତେ ହୁଅ କାହିଁକି ? ତମ ମୁହଁକୁ ଆଉ କାହାରି ନାଁ ଆସେନି ? ସ୍ୱାମୀ ବିବେକାନନ୍ଦଙ୍କର ଫଟୋଟା ଏ ଘରେ କାହିଁକି ଟଙ୍ଗା ହେଇଚି ? କେବେ ଦିନେ ତ ତମ ମୁହଁରୁ ଶୁଣିନି— ଭାଇ ! ଏ ଫଟୋଟା କାହାର ? ଏଭଳି ସୁନ୍ଦର ସୁପୁରୁଷ କ'ଣ ସତରେ କେବେ ଏ ଅସଭ୍ୟ ଅସୁନ୍ଦର ସଂସାରରେ ଆମର ଜନ୍ମ ହେଇଥିଲେ ? ଜାଣ ? ହଜାର ହଜାର ତମ ଆମେରିକାର ଆଉ ୟୁରୋପର ଖୁବ୍ ବଡ଼ବଡ଼ ଘରର ଝିଅବୋହୂ ଏଇ ଆମ ଭାରତୀୟ ସନ୍ନ୍ୟାସୀଟିକୁ ଦେଖି ପାଗଳ ହେଇଯାଇଥିଲେ । ତାଙ୍କ ପଛେ ପଛେ ଗୋଡ଼େଇ ଗୋଡ଼େଇ ଆସିଲେ ଭାରତକୁ । ବର୍ତ୍ତମାନ ତମେ ଭାରତୀୟ ଝିଅମାନେ ଗୋଡ଼ଉଚ ଗୋଟାଏ ମାଇଚିଆ ନାଚୁଆ ପଛରେ ? ଲାଜ ଲାଗୁନି ତମକୁ !"

"ତମେ ଗୋଟାଏ ମାନ୍ଧାତା ଅମଳର ମଣିଷ ଭାଇ !" ନୀଲି ତଥାପି ହସୁଥାଏ କହିଲା ବେଳକୁ, "ଏଗୁଡ଼ାକ କିଏ ? କାହା ଫଟୋ ଏଗୁଡ଼ାକ ଏତେ ଟଙ୍କା ଖର୍ଚ୍ଚ କରି କାଚ ବନ୍ଧେଇକରି ମାରିଚ ଆଣି କାନ୍ଥରେ ? ବାପା କହନ୍ତି ଏଗୁଡ଼ାଙ୍କ ବଦଳରେ ବରଂ ପଶୁଶ୍ୱାନ ବାବୁଙ୍କ ଫଟୋ ରଖିଲେ ମଣିଷର ସାଂସାରିକ ଜ୍ଞାନ ବଢ଼ନ୍ତା ।"

"ହଁ ପରା— ତେଣେ ସାଉଥ୍‌ରେ ଏନ.ଟି.ଆର. ଜୟଲଳିତାଙ୍କ ଫଟୋ ଘରେ ଘରେ ପୂଜା ହେଲାଣି," ମିଳି ମାଡ଼ିବସି କହିଲା ନୀଲି ଉପରେ ।

"ପୁଣି, ବାପା ଥରେ କହୁଥିଲେ ଏ ଫଟୋଗୁଡ଼ାକୁ ତମ ରୁମ୍ କାନ୍ଥରେ ଦେଖି" ନୀଲି ମାଡ଼ିବସିଲା ମିଳି କଥା ଉପରେ, "କୁଆଡ଼େ ଏଗୁଡ଼ା ସବୁ ବାୟା ପାଗଳା ହିପି ଆଉ ଡ୍ରଗଆଡ଼ିକ୍ଟ"

ଚମକି ପଡ଼ିଲା ଅନୁରାଗ ।

"କିଏ କହୁଥିଲେ, ବାପା ?" ଅନୁରାଗ ଚିହିଙ୍କି ଉଠିଲା ନୀଲି ଉପରେ, "କୋଉ ଫଟୋକୁ ଦେଖେଇ କହିଲେ ବାପା— ବାୟା, ପାଗଳା, ହିପି, ଡ୍ରଗ୍‌ଆଡିକ୍ଟ ?"

"ସମସ୍ତଙ୍କୁ—", କାନ୍ଥରେ ଝୁଲୁଥିବା ବଡ଼ବଡ଼ ଦାମିକା ବନ୍ଧେଇ ଫଟୋଗ୍ରାଫ୍ ଆଉ ପେଣ୍ଟିଂ ଭିତରୁ ଜଳଜଳ ଚାହିଁଥିବା ଅଧିକାଂଶ ଦାଢ଼ିଆ ମୁହଁକୁ ଆଙ୍ଗୁଠି ଦେଖେଇ ସରଳ ମନରେ କହିଲା ନୀଲି, "ଏ ସମସ୍ତେ । କି ନୁହଁ ? ବାପା ବେଶୀ ରାଗିଲେ ହେଇ ସେ ଲୋକଟାକୁ ।" ଆଙ୍ଗୁଠି ଦେଖେଇଲା ନୀଲି ଆଇନ୍‌ଷ୍ଟାଇନ୍‌ଙ୍କ ମୁହଁ ଉପରକୁ । ପୁଣି କହିଲା, "କହୁଥିଲେ ବାପା ଥଟ୍ଟାରେ — ୟାଙ୍କୁ ସେଲୁନ୍‌କୁ ନେଇ ବାଳ କଟେଇ ଆଣିଲେ କେମିତି ହୁଅନ୍ତା ? ଏ କୁଆଡ଼େ ଡ୍ରଗ୍ ଖାଉଥିଲେ ଭାଇ ?"

"ଡ୍ରଗ୍ ? ଡ୍ରଗ୍ ଖାଉଥିଲେ ଆଇନ୍‌ଷ୍ଟାଇନ୍ ? ଆଉ ବାପା ? ବାପା ଆମର କଣ ଖାଆନ୍ତି ପଚାରିଲୁନି ତାଙ୍କୁ ? ପ୍ରତିଦିନ ଅଧ ରାତିରେ ଘରକୁ ଝୁଲିଝୁଲି ଆସି ମା ପିଠିରୁ ଛାଲ ଛଡ଼ାନ୍ତି କାହିଁକି ପଚାରିଲୁନି ତାଙ୍କୁ ? ଟର୍ନର ଫିଟର୍ ହେଇ କାମ କରିବ ଯେ କାରଖାନାରେ ଜୀବନସାରା ସେ କ'ଣ ବୁଝିବେ ଆଇନ୍‌ଷ୍ଟାଇନ୍ କିଏ, ନିଉଟନ୍ କିଏ, ଗାନ୍ଧି କିଏ, ଅରବିନ୍ଦ କିଏ, ରାମକୃଷ୍ଣ କିଏ, ବିବେକାନନ୍ଦ କିଏ ?" ଅନୁରାଗ ଖାଲି ତା ବାପାଙ୍କ ଉପରେ ଏଭଳି ମନ୍ତବ୍ୟ ଦଉ ନ ଥିଲା, ଦଉଥିଲା ନୀଲିମିଲିଙ୍କ ପରି ମୂର୍ଖ ଝିଅ ଦିଇଟାଙ୍କ ଉପରେ ଯେ ଚାହୁଁଥିଲେ ଏଇ ସବୁ ଫଟୋଗ୍ରାଫ୍‌ଗୁଡ଼ାକୁ ଉଠେଇଦେଇ ତାଙ୍କ ଜାଗାରେ ବସେଇବାକୁ ଏ ଯୁଗର ଗୁରୁ ମାଇକେଲ୍ ଜ୍ୟାକ୍‌ସନ୍, କି ଏନ୍.ଟି.ଆର, କି ଜୟଲଳିତାଙ୍କ ଭଳି ସିନେମାଷ୍ଟାର୍ ଗୁରୁମାନଙ୍କୁ ।

ହଠାତ୍ ରୁମ୍ ଭିତରକୁ ପଶିଆସିଲେ ପରାଗଧର, ଅନୁରାଗର ବାପା । ହାତରେ ଧରିଥାନ୍ତି ଲମ୍ବା ଲୁହାଛଡ଼ ।

"ହଇବେ ଶଳା," ଅନୁରାଗର କଲର୍ ଧରିପକେଇ ମାଇଲେ ଏକ ଶକ୍ତ ଥାପଡ଼ ସେ ପୁଅ ଗାଲରେ । ନାଲ୍‌ନାଲ୍ ଆଖି କରି ପଚାରିଲେ, "ମୁଁ ଜାଣେ

ତୁ କିଏ । ତୁ ଗୋଟାଏ ବେଧଛୁଆ । କ'ଣ କରିପାଇଲୁ ମତେ ? ବେଇକ୍— ଜାଣିଚୁ ମୁଁ କିଏ ? କାଲି ସକାଳେ ହେବି କର୍ପୋରେସନ୍‌ର ମେୟର୍ । ଟିକଟ୍ ପାଇସାରିଚି । ଆଉ ମାସକ ପରେ ଇଲେକ୍‌ସନ୍ । ତୁ ଶଳା କି ପାଠ ଦେଖଉଚୁ ବେ ମତେ ? ଡାକ୍ତର ହବୁ ? ଘା ସଫା କରିବୁ ? ଯା ପଳା ଶୀଘ୍ର ମୋ ଆଗରୁ । ନ ହେଲେ ଏ ଲୁହାଛଡ଼ ଦେଖୁଚୁ ?''

ବାପା ବୋଧହୁଏ ଅନୁରାଗର କଥା ଶୁଣିନେଇ ସାରିଥାନ୍ତି । ସାରା ଦି'ପହରଟା ଯାକ ବସି ବସି ବୋତଲ ଟୁଂଟାଂ କରୁଥିଲେ ଆରପାଖ ରୁମ୍‌ରେ— ଜାଣି ନ ଥିଲା ସେକଥା ଅନୁରାଗ ?

ମା' ଦଉଡ଼ି ଆସିଲେ । ଅନୁରାଗକୁ ଭିଡ଼ିନେଲେ ରୁମ୍ ବାହାରକୁ । ତା'ପରେ ଆରମ୍ଭ ହେଲା ବାପାଙ୍କ ପ୍ରଳୟ କାଣ୍ଡ । ଝନ୍‌ଝାନ୍ ଢନ୍‌ଢାନ୍‌ନ୍ ଠନ୍‌ଠାନ୍ । ଲୁହାଛଡ଼ରେ ପିଟି ପକେଇଲେ ସେ ଗୋଟାକୁ ଗୋଟା କାଚ ବନ୍ଧେଇ ଫଟୋ, ପେଣ୍ଟିଂ, ଛବିଗୁଡ଼ାକୁ । ପରେ ପରେ ଭଙ୍ଗା ଫ୍ରେମ୍ ସହିତ ଗୋଟାକୁ ଗୋଟା 'ଗ୍ରେଟେଷ୍ଟ ପର୍ସନାଲିଟିଜ୍ ଅଫ୍ ଦ ୱାର୍ଲଡ୍' ଛିଟିକି ଆସି ପଡ଼ିଲେ ବିଚ୍ ରାସ୍ତା ଉପରେ, ଝରକା ବାଟେ । ସେମାନଙ୍କ ଭିତରେ ଥିଲେ ରାମକୃଷ୍ଣ ପରମହଂସ, ମା ଶାରଦାମଣି, ସ୍ୱାମୀ ବିବେକାନନ୍ଦ ଆଉ ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ସମେତ ଆଇନ୍‌ଷ୍ଟାଇନ୍, ଓପେନ୍‌ହିମର୍, ମେରିକ୍ୟୁରୀ, ଆଲବର୍ଟ ସ୍ୱେଜର୍, ଟଲଷ୍ଟୟ, ଡଷ୍ଟୋୟଭସ୍କି, କାର୍ଲମାକ୍ସ, ଗାନ୍ଧି ଆଉ ଅନେକ । ମହାମନୀଷୀଙ୍କ ଫଟୋ, ପେଣ୍ଟିଂ ସଂଗ୍ରହ ଅନୁରାଗର ଥିଲା ଏକ ମହାର୍ଘ ହବି । ଛୁଟର ନ ଚଢ଼ି ସାଇକେଲ୍ ଚଢ଼ି ସେ ସେଇଥିପାଇଁ ଯାଏ କୋଚିଂସେଣ୍ଟରକୁ । ଛୁଟର ଟଙ୍କାରେ କିଣିଥିଲା ସେ ଏଇ ମହାମନୀଷୀଙ୍କର ଛବିସବୁକୁ ।

ବାପାଙ୍କ ଟେରରିଷ୍ଟ୍ ଆକ୍‌ସନ୍‌କୁ ସେଦିନ ମୁକାବିଲା କରି ପାରି ନ ଥିଲା ଅନୁରାଗ । ପଛରୁ ମା ଜାବୁଡ଼ି ଧରିନେଇଥାନ୍ତି ତାକୁ । କାନେ କାନେ କହିଚାଲିଥାନ୍ତି, ''ପଳେଇଯା ପଳେଇଯା କୁଆଡ଼େ ନାଇ କୁଆଡ଼େ । ତତେ ମାରି ପକେଇବ ସେ ଅସୁର । ହାତରେ ଲୁହାଛଡ଼ ପଡ଼ିଚି ତା'ର । ସାରା ଦି ପହର ମାଲ୍ ପିଇପିଇ ମୁଣ୍ଡ ଆଉ ନାହିଁ ତା'ର । ସେ କଅଣ କରୁଚି ଜାଣେ ନାଇଁ ବାପ । ତତେ ମୁଁ ମୋ ଗହଣା ବିକି ପଛେ ଟଙ୍କା ଦେବି । କିଣିବୁ ଆଉଥରେ ସେ ଛବିଗୁଡ଼ାକ । ଏଇଲେ ପଳା ଏଠୁ । ପଳା ପଳା ପଳା ମୋ ଧନ ପରା ପଳା ଏଠୁ । ଶୀଘ୍ର ପଳା ଏ ନରକରୁ ।''

ସାଇକେଲ୍ ବାହାରକଲା ଅନୁରାଗ । ଆସିଲା କୋଚିଂ ସେଣ୍ଟରକୁ । ସେଠି ଆଉ ତା ମୁଣ୍ଡରେ କିଛି ପାଠ ପଶିଲା ନାଇଁ । ଖାଲି ଶୁଭୁଥାଏ ତାକୁ ମା'ଙ୍କର ସେଇ ଡାକରା— ପଳା ପଳା ପଳା । ଶୀଘ୍ର ପଳା ଏ ନରକରୁ ।

ନରକ ! ନରକ କୋଉଠି ? ନିଜ ଘର ? ଖାଲି ନିଜ ଘର କଣ ନରକ ? ଏ ସହରଟା ନରକ ନୁହଁ ? ଯାହାର ମେୟର ହେବେ ତା ବାପା ଆଉ ମାସକ ପରେ ? ଏ ପୃଥିବୀଟା କ'ଣ ନରକ ନୁହଁ ଯୋଉଠି ପ୍ରତିଦିନ ଚାଲିଚି ହତ୍ୟା, ଧର୍ଷଣ, ଗଣହତ୍ୟା, ଗଣଧର୍ଷଣ ?

କୋଚିଂ ସେଣ୍ଟରରେ ସନ୍ଧ୍ୟା ଛ'ରୁ ଦଶ ବସିବସି ଏଇଆ ଭାବୁଥାଏ ସେ । ତା ମୁଣ୍ଡରେ କିଛି ପଶୁ ନ ଥାଏ । ମ୍ୟାଥ୍‌ମ୍ୟାଟିକ୍ସ, କେମିଷ୍ଟ୍ରି, ଫିଜିକ୍ସ, ବାୟୋଲଜି ପ୍ରଫେସରମାନେ କ'ଣ କ'ଣ ପଢେଇ ଚାଲିଥିଲେ, ସେଦିନ ସନ୍ଧ୍ୟାରେ, କିଛି ଶୁଣି ନ ଥାଏ ସେ । ମଝିରେ ମଝିରେ ଗୋଟାଏ ଗୋଟାଏ ଦୀର୍ଘ ନିଶ୍ୱାସ ଛାଡୁଥାଏ ସେ । ଆଉ ପଚାରୁଥାଏ ମନକୁ ମନ-"ସେମାନେ ତାହେଲେ କିଛି ନୁହନ୍ତି ? ରାମକୃଷ୍ଣ ପରମହଂସ ଡେଡ୍ ? ଶ୍ରୀ ଅରବିନ୍ଦ ଡେଡ୍ ? ଗାନ୍ଧି ଡେଡ୍ ? ଆଇନଷ୍ଟାଇନ୍ ଡେଡ୍ ? ଅଲ୍ ଅଲ୍ ଅଲ୍ ଆର୍ ଡେଡ୍ ?"

କୋଚିଂ ସେଣ୍ଟରରୁ ଘରକୁ ସେଦିନ ରାତିରେ ଫେରିବ କି ନା ଏଇ ଦ୍ୱନ୍ଦ୍ୱ ନେଇ ଆସ୍ତେ ଆସ୍ତେ ସାଇକେଲ୍ ଚଳଉଥିଲା ଅନୁରାଗ ସେତେବେଳେ, ଯେତେବେଳେ ଶୁଣାଗଲା ତାକୁ ତା ନିଜ ନାଁ- ହେ ଅନୁ ! ଲୁକ୍ ଅପ୍ !

ପର ମୁହୂର୍ତ୍ତରେ ମାଡାମ୍ କ୍ୟୁରିଙ୍କ ଦର୍ଶନ, ପୁଣି ଭି.ଡି.ଓ ରେ ଯୋଉ ମୁହୂର୍ତ୍ତରେ ଦେଖିଲା ସେ ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ସେଇ ବିଶ୍ୱପ୍ରସିଦ୍ଧ ଛବି-ଖଣ୍ଡେ ସାଧା ଲୁଗାର କୁଞ୍ଚକୁ କାନ୍ଧ ଉପରେ ବେଢ଼େଇ ସମଗ୍ର ବିଶ୍ୱ ଦିଗରେ ନେତ୍ର ପ୍ରସାରି ଠିଆ ହେଇଛନ୍ତି ସେ, ଠିକ୍ ଏଇ ଛବିଟିକୁ ସଂଗ୍ରହ କରିଥିଲା ଅନୁରାଗ ଯାହାକୁ ଲୁହାଛଡ଼ରେ ପିଟି ପିଟି ଝରକା ବାଟେ ଫୋପାଡ଼ି ଦେଇଥିଲେ ବାପା, ରାସ୍ତା ଉପରକୁ ଅନ୍ୟମାନଙ୍କ ସହିତ, ବୁଝି ପାରିଲା ସେ ତତ୍‌କ୍ଷଣାତ୍ କ'ଣ ପାଇଁ ବିଚ୍ ରାସ୍ତା ମଝିରୁ କିଏ ତାକୁ ଆଖିରେ ଦଉଡ଼ି ବାନ୍ଧି ଭିଡି ଉଠେଇ ଆଣିଥିଲା ନରକରୁ ଏ ସ୍ୱର୍ଗକୁ ଓ କାହିଁକି !

କିନ୍ତୁ ବର୍ତ୍ତମାନ ଏ କ'ଣ ? ଏ ଲଙ୍ଗଳା ନାଲିମୁହାଁ ଥର୍ ହେଡରଡାହଲ୍‌ର ଏପରି ଅବସ୍ଥା ହେଲା କିପରି, କାହିଁକି ? କ'ଣ ଗୁଡାଏ ବକୁଚି ଏ ? ଏମାନଙ୍କର ଲୁଗାପଟା କଅଣ ସତରେ ସାପ ପାଲଟିଗଲେ ? ଆଉ ଖମାର୍ ମନସୁର୍-ଆଲ୍‌ସିସିଆନ୍ କୁକୁର ? ହେ ଭଗବାନ୍ ! ଏ କ'ଣ ଶୁଣୁଚି ସେ ? ଅନୁରାଗ ପଡ଼ିଗଲା ବିଷମ ଚିନ୍ତାରେ ।

ହ୍ରଦ କୂଳରୁ ଅଳ୍ପ ଦୂର ସେଇ ବଣ । ଯୋଉଠି ସେଇ ପାଚିଲା ଫଳର ବାସ୍ନା । ଫଳଟାକୁ ସେଦିନ ତଳୁ ଗୋଟେଇ ଶୁଙ୍ଘି ସାରି ପୁଣି ଫୋପାଡ଼ି ଦେଇଥିଲା

ସେ- ଠିକ୍ ସେଇ ଗଛ ମୂଳେ ଆଣି ଠିଆ କଲା ତାକୁ ଥର୍ । କହିଲା, “ହେଇ ଦେଖ ! ମିଃ ଇଣ୍ଡିଆ- ହେଇ ଦେଖ !”

ମୁଣ୍ଡ ଟେକି ଗଛକୁ ଚାହିଁଲା ଅନୁରାଗ । ମସ୍ତବଡ ଗଛ । ବହୁ ଶାଖା ପ୍ରଶାଖା । ବହୁ ପୁରୁଣା ଗଛଟାଏ ଭଳି ଦିଶୁଥାଏ ତା ଗଣ୍ଡି । କି ଗଛ ସେ ? କିନ୍ତୁ ସେଇ ଗଛର ଡାଳରୁ ଝୁଲୁଥାଏ ବର ଗଛର ଶିଅ ଭଳି କଅଣଟାଏ । ସାପ ? କିନ୍ତୁ ତାର ଯୋଡାଏ ମୁହଁ ! ତଳକୁ ମୁହଁ ଯୋଡାକୁ ଝୁଲେଇ ସୁସୁ ପବନ ଶୋଷୁଥାଏ ସେଇ ବିଚିତ୍ର ଭୟଙ୍କର ସର୍ପ ।

“ଏଇ ଗୋଟାକ ମୋ ଟ୍ରାଉଜର୍ !”, ଥର୍ ଚୁପ୍‌ଚୁପ୍ କହିଲା ଅନୁରାଗ କାନରେ, “ୟାକୁ ପିନ୍ଧି ଆସିଚି ମୁଁ ପୂରା ଦଶବର୍ଷ ! ଦଶବର୍ଷର ବନ୍ଧୁ ଏ ମୋର । କିନ୍ତୁ କେମିତି ମତେ ଛାଡି ଏ ବନ୍ଧୁ ମୋର ପଳେଇ ଆସିଚି ଏଠିକି ଦେଖ । ଯେତେ ଡାକିଲେ ଆସୁ ନାହିଁ । ଓଲଟି ସୁସୁ ହଉଚି ଗିଳିଦବ ବୋଲି !”

“ଏ ଦଶା କେବଳ ତମରି ନା ଅନ୍ୟମାନଙ୍କର ? ତମ ଶାର୍ଟ ଗଲା କୁଆଡ଼େ ? ବିଲ୍, ଡିକ୍, ଏସକପ୍ ? ଆଉ ସେମାନଙ୍କ ଗାର୍ଲଫ୍ରେଣ୍ଡସ୍- ସୁଜେନ୍, ଲିସା, ମ୍ୟାଡେଲିନ୍ ?” ଟେଷ୍ଟ୍ କଲାପରି ପଚାରିଲା ଅନୁରାଗ ।

“ଅଲ୍ ଅଲ୍ ଅଲ୍ ... କହିଲି ଫରା... ଅଲ୍ ଆର୍ ରୋମିଂ ଇନ୍ ଦ ଭ୍ୟାଲି ନେକେଡ୍ ! ପୂରା ନେକେଡ୍...,“ଥର୍, ଗଛ ଉପରକୁ ହାତ ଟେକି ଡାକିଲା, “ଆୟ ! କମ୍ ଡାଉନ୍... କମ୍ ଡାଉନ୍ ୟୁ ମାଇଁ ଡିଅର୍ ସର୍ପେଣ୍ଟ !”

ପ୍ୟାଣ୍ଟର ଗର୍ଜନ ଆହୁରି ଭୟଙ୍କର ଶୁଣାଗଲା ଗଛ ଉପରୁ ।

ଅନୁରାଗ ସତରେ ଡରିଗଲା ସେ ଗର୍ଜନ ଶୁଣି । ହଠାତ୍ ତା ପାଟିରୁ ବାହାରି ଗଲା, “ଥର୍, ତମେ ତମ ଗାର୍ଲଫ୍ରେଣ୍ଡ୍ ମାର୍ଗାରେଟ୍ ସାଙ୍ଗରେ ସେକ୍ସ ନା ଲଭ୍, କ’ଣ କରିଚ ଏ ଛ’ମାସ ଭିତରେ, ସତ କହ !”

“ଓଃ ! ଲଭ୍ ମିନସ୍ ସେକ୍ସ- ଆଇ ଡିଡ୍ ସେକ୍ସ ଫ୍ରମ୍ ଦ ବିଗିନିଂ... ମ୍ୟାଗି ଇଜ୍ ଏ ହଟ୍ ପଅଟ୍ ୟୁ ନୋ ?”, ଥର୍ ପୁଣିଥରେ ହାତ ଟେକି ଡାକିଲା ତା ଟ୍ରାଉଜରକୁ, ତଳକୁ ଓହ୍ଲେଇ ଆସିବା ପାଇଁ । ଖୁବ୍ ଗେହ୍ଲେଇ ହେଇ ଡାକିଲା ବି । କିନ୍ତୁ, ସର୍ପର ଗର୍ଜନ ବଢି ଚାଲିଲା ।

“ଦେଖ ଥର୍ ! ତୁମେ ଯଦି ଲଭ୍‌ରେ ଥାଆନ୍ତ- ମନେ ପଡୁଚି ଡଃ ଫ୍ରୟଡ୍‌ଙ୍କ ୱାର୍ଣ୍ଣିଂ ?”, ଅନୁରାଗ ଚେତେଇ ଦେଲା ଥର୍‌କୁ, “ଶୁଣ ! ପ୍ରମିସ୍ କର ।

ଏଥର ତମେ ତମ ଗାର୍ଲଫ୍ରେଣ୍ଡ୍ ମାର୍ଗାରେଟ୍‌କୁ ଖାଲି ଭଲ ପାଇବ ଅଥଚ ତାକୁ 'ହଟ୍ ପଟ୍' ବୋଲି ଭାବିବ ନାହିଁ-ଏଇଆ କହ ମନେମନେ ଓ ସଂକଳ୍ପ ନିଅ, ଏ ଗଛକୁ ଛୁଇଁ । ଦେଖିବ ଅବସ୍ଥା ବଦଳି ଯିବ ।''

''ଲେଟ୍ ମିସି-'', ଥର୍ ମେଧାବୀ ଓ୍ୱେଷ୍ଟର୍ଣ୍ଣ ଛାତ୍ରଟିଏ ଭଳି ହଠାତ୍ ସିରିୟସ ହେଇଗଲା ଓ ମୁଣ୍ଡକୁ ଥରେ ଯାହା ଉଚିତ ବୋଲି ଷ୍ଟ୍ରାଇକ୍ କରିଗଲା ତାକୁ ଜୀବନ ପଣ କଲା ପରି ଅଭ୍ୟାସ କରିବାକୁ ବସି ପଡିଲା ଗଛ ମୂଳେ । ପଟ୍ କିନା ବସି ପଡିଲା ସେ । ସେଇଠୁ କହିଲା, ''ଆଇ ପ୍ରମିସ୍-ପ୍ରତିଜ୍ଞା କଲି-ଏଇ ମୁହୂର୍ତ୍ତରେ ପ୍ରତିଜ୍ଞା ନେଲି...'', ପରେ ପରେ ଆଖି ବୁଜି ଦେଲା ଥର୍ ।

ପ୍ରାୟ ଦଶମିନିଟ୍ ପରେ ଧଡ୍ କିନା ଗୋଟାଏ କ'ଣ ଶବ୍ଦ ଶୁଣାଗଲା ।

ଅନୁରାଗ ଗଛମୂଳେ ଥର୍‌କୁ ଛାଡି ଦେଇ ହ୍ରଦ କୂଳକୁ ଚାଲିଯାଇଥିଲା । ସେଠୁ ସେଇ ମାତ୍ର ଫେରୁଥାଏ ସେ ଥର୍ କ'ଣ କରୁଚି ସତରେ ଦେଖିବାକୁ ।

ଥର୍‌ର କାନ୍ଧ ଉପରେ ପଡିଥାଏ ତାର ଦଶବର୍ଷର ପୁରୁଣା ସାଥି- ଖଣ୍ଡେ ଦସିଛଡା ଧଡଡ଼ ଟ୍ରାଉଜର୍ ।

''ତମେ ଥର୍ କ'ଣ ଜଣେ ହିପ୍ପିଥିଲ ଏଠାକୁ ଆସିବା ପୂର୍ବରୁ ?'' ଆଶ୍ଚର୍ଯ୍ୟ ହେଲା ଅନୁରାଗ ସେଇ ଛିଣ୍ଡା ପ୍ୟାଣ୍ଟ୍ ସାର୍ଟଟାକୁ ଦେଖୁଦେଖୁ ।

''ନା-'ଅସ୍ଲୋ'ୟୁନିଭର୍ସିଟିର ଷ୍ଟୁଡେଣ୍ଟ ମୁଁ । ମୋ ସବ୍‌ଜେକ୍ଟ ଓସୋନୋଗ୍ରଫି । ସମୁଦ୍ର ମୋର ସ୍ୱପ୍ନ ।'', ଟ୍ରାଉଜର୍‌ଟାରେ ଗୋଡ ଗଳଉଥାଏ ଥର୍ ।

ହସିଲା ଅନୁରାଗ । ଥର୍‌କୁ ବିଶ୍ୱାସକୁ ନେଇ କହିଲା, ''ସମସ୍ତଙ୍କୁ ଏଇ ମନ୍ତ୍ର ଦବ ଥର୍ । ସେକ୍ସ ନୁହେଁ ଲଭ୍- ଏଇ ନା ସେ ମନ୍ତ୍ର ?''

ପ୍ୟାଣ୍ଟର ବଟନ୍ ଦଉଦଉ ଥର୍ ପଚାରିଲା—

''ଆଉ, ତମ ଆଲ୍‌ସିସିଆନ୍ ପାଇଁ କିଛି ମନ୍ତ୍ର ? ସେ ତ ଆରମ୍ଭ କରି ସାରିଚି ପୂରା ଇଷ୍ଟ୍ ଓ୍ୱେଷ୍ଟ ପଲିଟିକ୍‌ସ୍ । ଜାଣି ନ ?''

ବୁଝି ପାରିଲା ନାହିଁ ଅନୁରାଗ ।

''ଜାଣିବ । ଠିକଣା ଟାଇମ୍‌ରେ ଜାଣିବ । ଥ୍ୟାଙ୍କ୍ ୟୁ ଫର୍ ୟୋର୍ ମନ୍ତ୍ର ମିଃ ଇଣ୍ଡିଆ ! ଏଟା ସତରେ ଗୋଟେ ଏନ୍‌ଚାଣ୍ଟେଡ୍ ପ୍ଲାନେଟ୍— ମନେ ହଉଚି ମୋର ।''

ଦୁହେଁ ଫେରିଗଲେ ନିଜ ନିଜ ଗୁଂଫାକୁ, ପରେ ପରେଏ ଅଲଗା ଅଲଗା ରାସ୍ତାରେ, ବଣ ଭିତରେ ।

[ପାଞ୍ଚ]

ପ୍ରଫେସର ପ୍ରୟଡ଼ ଦ୍ୱିତୀୟଥର ଆବିର୍ଭୂତ ହେଲେ । ଉପତ୍ୟକାର ଏକ ଭିନ୍ନ ଅଞ୍ଚଳ । ଲମ୍ୱା ପଡ଼ିଆଟିଏ ବଣ ମଝିରେ ଲମ୍ୱିଯାଇଛି ବେଶ୍ ଦୂର । ଏଭଳି ସ୍ଥାନକୁ କହନ୍ତି 'ଡେଲ୍' ବା 'ଭେଲ୍' । ଜହ୍ନରାତିରେ ଏଇ ଅଞ୍ଚଳଟା ବିଶେ ଅଦ୍ଭୁତ । ଅନୁରାଗ ସନ୍ଦେହ କରୁଥିଲା ପ୍ରଥମେ ପ୍ରଥମେ ଯେ, ଜହ୍ନରାତିରେ ହୁଏତ ଏଇ ଖୋଲା କୁହୁଡ଼ି ଘେରା ବନପ୍ରାନ୍ତରରେ ସ୍ୱର୍ଗରୁ ଗନ୍ଧର୍ବ କିନ୍ନରମାନେ ଅବତରଣ କରନ୍ତି । ସାରା ରାତି ନୃତ୍ୟଗାନ ଚାଲେ ଓ ହ୍ରଦରେ ମଧ୍ୟ ପରୀମାନେ ଜଳକେଳି କରନ୍ତି ପାହାନ୍ତା ପୂର୍ବରୁ । କିନ୍ତୁ ଏ ଥିଲା ତା'ର କଳ୍ପନାପ୍ରସୂତ ସ୍ୱପ୍ନ ମାତ୍ର । କେବେ ଦିନେବି ବାସ୍ତବରେ ଦେଖି ନ ଥାଏ ଏପରି କୌଣସି ଦୃଶ୍ୟ ।

କିନ୍ତୁ ସେଦିନ ଯୋଗ କ୍ଲାସ୍‌ର ପ୍ରାରମ୍ଭରେଇ ବିଷୟଟା ଉଠେଇଲେ ପ୍ରଫେସର୍ । କହିଲେ— ଭୂତ, ପ୍ରେତ, ଘୋଷ୍ଟ, ଘାଉଲ୍, ପରୀ, ଅପ୍ସରୀ, ଗନ୍ଧର୍ବ, କିନ୍ନର, ଦେବାଦେବୀ ଅର୍ଥାତ୍ ବିଭିନ୍ନ ସତ୍ତାମାନେ ସତରେ ଅଛନ୍ତି । ସେମାନେ ଏଇଠି ଅଛନ୍ତି, ପୃଥିବୀରେ ବି ଅଛନ୍ତି, ବିଭିନ୍ନ ଗ୍ୟାଲାକ୍ସିରେ ବି ଅଛନ୍ତି ।

"ଆପଣ ଘୋଷ୍ଟ, ଫେୟାରୀ, ଗଡ୍‌ସ୍ ଏଟ୍‌ସେଟ୍ରାରେ ବିଲିଭ୍ କରନ୍ତି ପ୍ରଫେସର୍ ?" ଓ୍ୱେଷ୍ଟର୍ଣ୍ଣ ବ୍ଲକ୍‌ରୁ ଜୋର ପ୍ରତିବାଦ ଶୁଣାଗଲା ।

"ଏ ସବୁ ଅନ୍‌ସାଇଣ୍ଟିଫିକ୍ । ଆପଣ ଆଧୁନିକ ବିଜ୍ଞାନର ବିରୋଧୀ କଥା କହୁଛନ୍ତି," ରୁଷିଆର ମାୟାକୋଭସ୍କି ସବୁଠୁଁ ବେଶି ବଡ଼ ପାଟିକଲା । ତାକୁ ସମର୍ଥନ କଲା ଚାଓ ।

"ଆମେ ଦେବାଦେବୀବିଶ୍ୱାସୀଙ୍କୁ କାଫେର୍ ବୋଲି ଜାଣୁ । ଆପଣ ବେଶି ବେଶି ହିନ୍ଦୁତତ୍ତ୍ୱ ପଢ଼ାଉଛନ୍ତି ଆମକୁ ପ୍ରଫେସର୍ । ଆମେ ମୂର୍ତ୍ତିପୂଜାର ଘୋର ବିରୋଧୀ ଜାଣନ୍ତି ଆପଣ । ଆମର ରିଲିଜିୟସ୍ ସେଣ୍ଟିମେଣ୍ଟ୍‌କୁ ଏହାଦ୍ୱାରା ଆହତ କରୁଚନ୍ତି ଆପଣ । ଏ ସେଣ୍ଟର୍ ସିକ୍ୟୁଲାରିଜିମ୍ ପାଇଁ ଉଦ୍ଦିଷ୍ଟ— ଏକଥା କହୁ ନ ଥିଲେ ମୂଳରୁ ଆମକୁ ? ବର୍ତ୍ତମାନ ଏ କ'ଣ ?" ଇସ୍‌ଲାମିକ ଗୋଷ୍ଠି ହଠାତ୍ ଏକ ସ୍ୱରରେ ମାତିଉଠିଲେ । ତାଙ୍କ ନେତ୍ରୀ ଖମାର ମନସୁର୍ ଅଣ୍ଟାରେ ତା' ଓଢ଼ଣୀଟାକୁ ବାନ୍ଧି ଠିଆ ହେଇଥାଏ ସମସ୍ତଙ୍କ ସାମ୍ନାରେ । ଅନୁରାଗ ଦେଖିଲା ମହମ୍ମଦ ବିରାଧୀବୀରବର ବି ଯାଇ ଠିଆହେଇଚି ସେମାନଙ୍କ ଦଳରେ । ସେ ଦଳରେ ସାରା ମିଡିଲ୍‌ଇଷ୍ଟ ଲଗାୟତ ପାକିସ୍ଥାନ, ବାଙ୍ଗଲାଦେଶ, ମାଲେସିଆ, ଇଣ୍ଡୋନେସିଆକୁ ମିଶାଇ ଅନେକଟା ଆଫ୍ରିକାନ୍ ରାଷ୍ଟ୍ରର ଛାତ୍ରଛାତ୍ରୀ ସାମିଲ୍ ହୋଇସାରିଥାନ୍ତି ଏଇ ମାସ କେତେଟା ଭିତରେ ନିଶ୍ଚେ ।

"ରିଲିଜିୟନ୍ ଗୋଟିଏ ଅନ୍‌ସାଇଣ୍ଟିଫିକ୍ ଜ୍ଞାନରୁ ଜନ୍ମ ନେଇ ନାହିଁ ମିସ୍ ଖମାର୍ । ଦିନେ ଏ ଥିଲା ବିଜ୍ଞାନ— ସେ କାଳର ସର୍ବାଧୁନିକ ବିଜ୍ଞାନ । ବର୍ତ୍ତମାନର ସର୍ବାଧୁନିକ ବିଜ୍ଞାନ କହେ— ବିଇଙ୍ଗ୍‌ସ୍‌ମାନେ ଅଛନ୍ତି । ବିଗ୍‌ବ୍ୟାଙ୍ଗର ପ୍ରଥମ ତିନି ମିନିଟ୍ ଭିତରେ ପ୍ରୋଟନ୍ ନ୍ୟୁଟ୍ରନ୍ ଖାଲି ଜାତ ହୋଇନାହାନ୍ତି । ବିଇଙ୍ଗିସ୍‌ମାନଙ୍କର ଜନ୍ମ ବି ସେଇଠୁ । ବିଲିୟନସ୍ ବିଲିୟନସ୍ ଗ୍ୟାଲାକ୍ସିରେ କ'ଣ ଖାଲି ତାରାମାନେ ହୁତ୍ ହୁତ୍ ହେଇ ଜଳୁଚନ୍ତି ଭାବୁଚ ? ସେଠି ବି ପ୍ରାଣ ଶକ୍ତି (ପାର୍ଥିବ ଶକ୍ତିଠୁଁ ଭିନ୍ନ) ସୁପ୍ତ ଅବସ୍ଥାରେ ଅଛି । କିନ୍ତୁ ପ୍ରାଣଶକ୍ତି ସହିତ ଚେତନାର ମିଶ୍ରଣରୁ 'ପ୍ୟାକେଟ୍‌ସ୍ ଅଫ୍ ଭାଇଟାଲ୍ ଫୋର୍ସ' ନିଜ ନିଜର ଅସ୍ତିତ୍ୱ ବଜାୟ ରଖି ଅଛନ୍ତି । ତାଙ୍କୁଇ ଆମେ କହୁ ଦେବାଦେବୀ, ଗନ୍ଧର୍ବ, କିନ୍ନର, ଭୂତପ୍ରେତ ଇତ୍ୟାଦି । ଏପରିକି ମଣିଷର ଆତ୍ମା ଗୋଟିଏ ପ୍ୟାକେଟ୍ ଅଫ୍ ସୁପର କନ୍‌ସସ୍‌ନେସ୍ ! ହିନ୍ଦୁମାନଙ୍କର ଦେବାଦେବୀ ଅର୍ଥାତ୍ ପିତୁଳା ପୂଜା ଏକଦମ ଯଥାର୍ଥ ।" ପ୍ରଫେସର୍ କଅଣ କହୁଥାନ୍ତି ସେଥିପ୍ରତି ଖମାର୍ ମନସୁର୍ ଆଉ ତାଙ୍କ ଗୋଷ୍ଠିର କାହାରି ହେଲେ ଧ୍ୟାନ ନ ଥାଏ ଆଉ ।

ସେମାନେ ପାଟି କରୁଥାନ୍ତି, "ପ୍ରମାଣ ଦିଅ ! ପ୍ରମାଣ ଦିଅ ! ନଚେତ୍ ଆମକୁ ଛାଡ଼ । ଆମର ଏ ଟ୍ରେନିଂ ଦରକାର ନାହିଁ ।"

ପାଶ୍ଚାତ୍ୟ ଗୋଷ୍ଠି କହିଲେ, "ଆପଣ ମନସ୍ତତ୍ତ୍ୱର ପ୍ରଫେସର୍ । ବିଗ୍‌ବ୍ୟାଙ୍ଗ୍ କଥା କେମିତି ଜାଣିଲେ ? କାହିଁ ଆମରତ ସେମିତି କିଛି ପଢ଼ା ହେଇ ନାହିଁ । ଆମେ ପଢ଼ିଚୁ ଷ୍ଟିଫେନ୍ ୱିନ୍‌ବର୍ଗଙ୍କ "ଦ ଫାଷ୍ଟ ଥ୍ରି ମିନିଟ୍‌ସ ।" ଡକାଯାଉ ଏଠିକି ତାଙ୍କୁ । ସେ ତ ନୋବେଲ୍ ଲରିଏଟ୍ ୧୯୭୯ର । ସେଭଳି ଲୋକଙ୍କୁ ଡକାଯିବା ଦରକାର ଏଠିକି ଲେକ୍‌ଚର୍ ପାଇଁ ।"

ପୁଣି ଦଳେ ଡିମାଣ୍ଡ କଲେ, " ବରଂ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଷ୍ଟିଫେନ୍ ହକିଙ୍ଗ୍‌ସ୍‌ଙ୍କୁ ଡକାଯାଉ । ସେ ତ ବର୍ତ୍ତମାନ ଦ୍ୱିତୀୟ ଆଇନଷ୍ଟାଇନ୍ । ବିଗ୍‌ବ୍ୟାଙ୍ଗ୍ ଉପରେ ବହି ତାଙ୍କର 'ଏ ବ୍ରିଫ୍ ହିଷ୍ଟ୍ରି ଅଫ୍ ଟାଇମ' ଖୁବ୍ ବିଖ୍ୟାତ । ସେ ତ କହୁଚନ୍ତି ଏକ ନିର୍ଦ୍ଦିଷ୍ଟ ସମୟରେ ଏକ ବିରାଟ ବିସ୍ଫୋରଣ ଘଟିଲା । ତା ନାଁ ଜର୍ଜ ଗାମୋଙ୍କ ଭାଷାରେ ବିଗ୍‌ବ୍ୟାଙ୍ଗ୍ । ସେଇଠୁ ଜାତ ହେଇଚି ସମୟ ଅର୍ଥାତ୍ ଟାଇମ୍ । କିନ୍ତୁ ବିଇଙ୍ଗ୍‌ସ ? ଭୂତପ୍ରେତ ? ଫେୟାରିଜ୍ ? ଷ୍ଟୁପିଡ୍ ଆଇଡ଼ିଆ । ରିଏଲି ଅନ୍‌ସାଇଣ୍ଟିଫିକ୍ ।"

ପ୍ରଫେସର ଫ୍ରୟଡ୍ ଚୁପ୍‌ଚାପ୍ ଶୁଣୁଥାନ୍ତି ସବୁ । ଆସ୍ତେକିନା ଏଇ ଭିତରେ ସେ ନିଜର ବେକ ଚାରିପଟୁ ଟାଇନଟ୍‌ଟାକୁ କେତେବେଳେ ହୁଗାଳିଦେଇ ସାରିଥାନ୍ତି । କୋଟ୍ ବୋତାମଗୁଡ଼ାକ ଖୋଲା ଥିଲା ପୂର୍ବରୁ । ଧୀରେ ଟାଇଟାକୁ କାଢ଼ି ତଳକୁ

ପକେଇଦେଲେ ପ୍ରଫେସର୍ । ପରେ ପରେ କୋଟ୍ । ତା' ପରେ ଶାର୍ଟ ବନିୟାନ୍ । କେବଳ ପ୍ୟାଣ୍ଟ୍ ଆଉ ଜୋତା ମୋଜା ଥାଏ ଦେହରେ । ଏହା ପରେ ନିଜର ସ୍ଥିତି ବିଷୟରେ ଏକ ଅଦ୍ଭୁତ ଘୋଷଣା କଲେ ସେ । କହିଲେ, "ଦେଖ ! ମୋର ଏ ଶରୀରଟା ପ୍ରକୃତରେ ରକ୍ତମାଂସର ନୁହେଁ— ଏ ବଣ୍ଡଲ୍ ଅଫ୍ ଭାଇଟାଲ୍ ଫୋର୍ସ କି ନା ଦେଖ !" କହୁ କହୁ ଅଣ୍ଟାରୁ ସମୁଦାୟ ଉପର ଅଂଶଟା ତାଙ୍କ ଶରୀରର ଥଲ୍ ଥଲ୍ ହେବାପରି ଜଣାଗଲା । ଯେମିତିକି ଗୋଟିଏ ଜଳନ୍ତା ମହମବତିର ଶିଖା ! ଅଣ୍ଟା ଉପରକୁ ମହମବତିର ଶିଖାପରି ଜଳୁଥାନ୍ତି ପ୍ରଫେସର୍ ଆଉ ପବନରେ ସେ ଶିଖା ମଧ୍ୟ ଦୋହଲୁଥାଏ ରୀତିମତ୍ । ଦୋହଲୁ ଦୋହଲୁ ଅଣ୍ଟା ଉପରୁ ମୁଣ୍ଡ ପର୍ଯ୍ୟନ୍ତ ଅଂଶଟା ପ୍ରଫେସରଙ୍କର ହଠାତ୍ ଲିଭିଗଲା ପୂରାପୂରି । କେବଳ ଅଣ୍ଟାତଳକୁ ପ୍ୟାଣ୍ଟ୍ ଆଉ ଜୋତାର କବନ୍ଧଟା ଠିଆ ହେଇଥାଏ ଦୃଢ଼ଭାବେ ଖୁଣ୍ଟଟିଏ ଭଳି ।

ଚିତ୍କାର କରିଉଠିଲେ ଶହେ କୋଡ଼ିଏ ଜଣ ଛାତ୍ରଛାତ୍ରୀ ଏକା ସାଙ୍ଗେ ଭୂତ ଦେଖି ହାଉଳି ଖାଇଲାଭଳି । ପରସ୍ପରକୁ କୁଣ୍ଢେଇ ଧରି ସମସ୍ତେ ବୋବାଳି ଛାଡ଼ିଲେ, "ଭୂତ ! ଭୂତ !"

ଏଇ ଭିତରେ ପ୍ରଫେସର୍‌ଙ୍କ ଅଦୃଶ୍ୟ ଅଂଶଟି ପୁଣି ଦୃଶ୍ୟମାନ ହୋଇ ଉଠିଲାଣି । ହସୁଥାନ୍ତି ସେ ମୁରୁକେଇ ମୁରୁକେଇ । ତାଙ୍କ ପାଟିରୁ ବାହାରିଗଲା, "ଦେଖିଲ ? ମୁଁ ନିଜେ ବି ଗୋଟିଏ ଏନର୍ଜି ପ୍ୟାକେଟ୍ ! ମତେ ତୁମେ ଭୂତ କହିପାର । କିନ୍ତୁ ମୁଁ ଜାଣେ ମୁଁ ଭୂତ ନୁହେଁ କି ପ୍ରେତ ନୁହେଁ । କହିପାର ମୁଁ ଏକ କନ୍‌ସସ୍ ଏନର୍ଜି ପ୍ୟାକେଟ୍ ବା କହିପାର ଏନର୍ଜିର ଅନ୍ୟ ଏକ 'କ୍ୱାଣ୍ଟମ୍' ସ୍ଥିତି । କେବଳ ମୁଁ ନୁହେଁ । ତମେ ସମସ୍ତେ ଏଇ 'କ୍ୱାଣ୍ଟମ୍' ସ୍ଥିତିରେ ରହିଛି ଏଠି ।"

ଅନୁରାଗ ଚମକି ଉଠିଥାଏ— ସେଇ ପ୍ରଥମ ଶବ୍ଦ "ଦେଖିଲ" ପାଖରୁ ଯେମିତିକି ସେଇ ମନ୍ତ୍ରଭଳି ଶବ୍ଦଟା ଖସିପଡ଼ିଲା, ଜାଣିଜାଣି ପ୍ରଫେସରଙ୍କ ମୁହଁରୁ କେବଳ ଅନୁରାଗ ଉଦ୍ଦେଶ୍ୟରେ ।

ଏଇ 'ଦେଖିଲ' ଶବ୍ଦ ସହିତ ଏକ ମର୍ମନ୍ତୁଦ ରହସ୍ୟମୟ ବାଲ୍ୟସ୍ମୃତି ଜଡ଼ିତ ଥିଲା ଅନୁରାଗର । ହଠାତ୍ ସେଇ ସ୍ମୃତିଟା ଉଜ୍ଜୀବୀତ ହୋଇ ଉଠିଲା ।

ଛୋଟ ପିଲାଦିନେ ଏକ ସ୍କୁଟର୍ ଆକ୍ସିଡେଣ୍ଟ୍‌ରୁ ମରୁ ମରୁ ବଞ୍ଚିଯାଇଥିଲା ଦୈବାତ୍ ଅନୁରାଗ । ତାକୁ ସେତେବେଳେ ଚାରି ବର୍ଷ । ତା'ର ଜଣେ ମାମୁଁ ତାକୁ ସ୍କୁଟର୍‌ରେ ଠିଆ କରି ନେଉଥିଲେ ମାମୁଁ ଘରକୁ । ନୁରିମାମୁଁ ଘରୁ ବାହାରିବାବେଳେ ଅନୁରାଗର ମା' ତାଙ୍କ ଭାଇକୁ ସାବଧାନ କରି ଦେଇଥିଲେ, "ଧୀରେ ଧୀରେ ଯିବୁ ।" କିନ୍ତୁ ନୁରିମାମୁଁ ସହର ଟପି ଗାଁ ରାସ୍ତା ଧରିବା ମାତ୍ରେ ତାଙ୍କ

ଆଗରେ ସ୍କୁଟର୍ ଷ୍ଟିଅରିଂକୁ ଆଶ୍ରୟ କରି ଠିଆ ହୋଇଥିବା କନକନିଆ ଭଣଜାଟିକୁ ତାଙ୍କର ପଚାରିଲେ, "ଏଇ ! ଦେଖୁଚୁ ସ୍ପିଡ଼ୋମିଟରର କଣ୍ଟା ? ଏଇଲେ ଗାଡ଼ି ଅଛି ମୋଟେ ଚାଳିଶରେ । ଚାହିଁଥା କଣ୍ଟାକୁ । କେମିତି ଦଉଡ଼ିବ ଆଗକୁ ଚାହିଁଥା ।"

ଅନୁରାଗ ଚାରିବର୍ଷର ଶିଶୁ । ସ୍କୁଟର ସ୍ପିଡ଼ୋମିଟର୍‌ର କଣ୍ଟାର ଗତିକୁ ଅନେଇବାଟା ତା'ପାଇଁ ପିଲାଖେଳ । ହଠାତ୍ ସେ ଦେଖିଲା—କଣ୍ଟା ଧାଉଁଚି ଖୁବ୍ ବେଗରେ ଆଗକୁ । ତାକୁ ଡର ଲାଗିଲା । ପବନ ବାଜୁଥାଏ ଖୁବ୍ ଜୋର୍‌ରେ ତା' ମୁହଁ ନାକ କାନ ଆଖିରେ । ସେ ଆକଟାମାକଟା ହେଇପଡୁଥାଏ । ତା'ପରେ ତାକୁ ଲାଗିଲା ଗୋଟାଏ ହାତ କୋଉଠୁ ଲମ୍ବି ଆସିଲା । ଝଟ୍‌କିନା ସେ ହାତ ଗୋଟିଏ ଝାମ୍ପରେ ଉଠେଇଦେଲା ତାକୁ ଶୂନ୍ୟେ ଶୂନ୍ୟେ ଉପରକୁ । ପରେ ପରେ ପଡ଼ିଲା ସେ ଯାଇ ରାସ୍ତାକଡ଼ ପାଣି କାଦୁଅ ମାଟି ଉପରେ । ସେତିକିବେଳେ ଶୁଣିଲା ସେ— କିଏ ତାକୁ ଯେମିତି କହିଲା, "ଦେଖିଲୁ !" ଲମ୍ବା ହାତଟାକୁ ଦେଖିଥିଲା ସେ । ନୁରିମାମୁଁ ମରିଗଲେ ସ୍କୁଟର ଦୁର୍ଘଟଣାରେ । କିନ୍ତୁ, ଅନୁରାଗକୁ ଲୋକେ ପାଇଲେ ବିଲ ଭିତରୁ । ତା' ଦେହରୁ ମଳିଚମ ଟିକିଏ ବି ଛିଡ଼ି ନ ଥାଏ । କିନ୍ତୁ କାଦୁଅରେ ଆକଟାମାକଟା ହେଇ ରାହାଧରି କାନ୍ଦୁଥାଏ ସେ । ଲୋକେ କଥାବାର୍ତ୍ତା ହଉଥାନ୍ତି, "ଆହା ଭଗବାନ୍ ବଞ୍ଚେଇଦେଲେ ସିନା ପିଲାଟିକୁ !"

ସେଦିନର ଘଟଣା ଏପର୍ଯ୍ୟନ୍ତ କୁଆଡ଼େ ଲୁଚିଯାଇଥିଲା ଅନୁରାଗର ପରସ୍ତ ପରସ୍ତ ସ୍ମୃତିର ଗଦାଗୁଡ଼ାକ ତଳେ । ହଠାତ୍ ସବା ତଳୁ ବାହାରି ଆସିଲା ସେଇଟା, କାଗଜ ଗଦାତଳୁ ପୁରୁଣା ଚିଠି ଖଣ୍ଡେଭଳି ।

ଡଃ ଫ୍ରୟଡ୍ ଇତି ମଧ୍ୟରେ ଆରମ୍ଭ କରିଦେଲେଣି ତାଙ୍କ ନୂଆ ଲେସନ୍ । କୁଣ୍ଡଳିନୀ ଉପରେ ଏକ ଲମ୍ବା ଲେକ୍‌ଚର୍ ଆରମ୍ଭ କରୁଥାନ୍ତି ସେ ସେଇ ମାତ୍ର । ପ୍ରତି ମଣିଷର ଶରୀରରେ ସାଇକିକ୍ ଏନର୍ଜିର ଆଠଟା କେନ୍ଦ୍ର ଥାଏ ଓ ସେସବୁ କେନ୍ଦ୍ର ଅର୍ଥାତ୍ ମୂଳାଧାର, ସ୍ୱାଧୀଷ୍ଠାନ, ସୂର୍ଯ୍ୟ, ଅନାହତ, ବିଶୁଦ୍ଧ, ଅଗ୍ନି, ସହସ୍ରାର ଓ ବ୍ରହ୍ମରନ୍ଧ୍ରର ଅବସ୍ଥିତି କେଉଁଠି କେଉଁଠି ରହିଛି ଏ ବିଷୟରେ ତାତ୍ତ୍ୱିକ ଧାରଣା ଦେଇସାରି ସୁଷୁମ୍ନା, ଇଡ଼ା, ପିଙ୍ଗଳା ନାଡ଼ି ତିନୋଟିର ସ୍ଥିତି ଓ ସେମାନଙ୍କର କାର୍ଯ୍ୟକାରିତା ବିଷୟ ପ୍ରାଞ୍ଜଳଭାବେ ବ୍ୟାଖ୍ୟା କରି ଚାଲିଥାନ୍ତି ସେ । ଏହା ପରେ ଦରକାର ପଡ଼ିଲା ଡିମନ୍‌ଷ୍ଟ୍ରେସନ୍ ।

ଡଃ ଫ୍ରୟଡ୍ ସାରା କ୍ଲାସ୍‌କୁ ଅନାଇଲେ । ପଚାରିଲେ, "ଏଠି ଏମିତି କେହି ଅଛି ଯେ ଉଲଗ୍ନତା ଦେଖିଲେ ଭୂତ ଦେଖିଲା ଭଳି ହାଉଳି ଖାଇଉଠିବ ? ମୋର ଦରକାର ଗୋଟିଏ ଉଲଗ୍ନ ଶରୀର— ଡିମନ୍‌ଷ୍ଟ୍ରେସନ୍ ପାଇଁ । ସାଇଣ୍ଟିଫିକ୍ ଡିମନ୍‌ଷ୍ଟ୍ରେସନ୍ ଅବଶ୍ୟ ।"

"ନୋ ଅବଜେକ୍ସନ୍— ଏଇ ନିଅନ୍ତୁ ମତେ," ଥର୍ ଆଗତୁରା ନିଜକୁ ସମର୍ପଣ କରିଦେଲା ଡିମନ୍ଷ୍ଟ୍ରେସନ୍ ପାଇଁ ।

"ତା'ହେଲେ ଆମେ ଏଠୁ ଚାଲିଯିବୁ...", ଧମକ ଦେଲା ଖମାର୍ ମନସୁର୍ ତାଙ୍କ ଦଳ ତରଫରୁ, "ଏହା ଆମ ଧର୍ମବିରୁଦ୍ଧ ।"

"ଠିକ୍ ଅଛି । ଯେଉଁମାନେ ଚାଲିଯିବାକୁ ଚାହଁ ଚାଲିଯାଇପାର । କୋର୍ସ କିନ୍ତୁ ଚାଲିବ । ମୁଁ ମୋ କୋର୍ସ ଫିନିସ୍ କଲେ ଆସିବେ ଅନ୍ୟ ପ୍ରଫେସରମାନେ । ବହୁ ବଡ଼ ବଡ଼ ମନୀଷୀ ଅପେକ୍ଷା କରିଛନ୍ତି । ତାଙ୍କ ଟାଇମ୍ ସିଡ୍ୟୁଲ୍ ଚେଞ୍ଜ୍ କରିବାର ଅଧିକାର ନାହିଁ କାହାର । ଏଠାରେ ପ୍ରତ୍ୟେକ କାମ ଟାଇମ୍ ସିଡ୍ୟୁଲ୍‌ରେ ହେବାକୁ ବାଧ । ନଚେତ୍ ଚାରିବର୍ଷ ଭିତରେ ତମେମାନେ ଏଠୁ ଡିଗ୍ରୀ ନେଇ ଯାଇପାରିବ ନାହିଁ । ତେଣେ ଆର୍ଥ୍‌ରେ ଯେଉଁ ପ୍ରୋଗ୍ରାମ୍ ଅପେକ୍ଷା କରିଛି, ତମମାନଙ୍କ ଯିବା ପର୍ଯ୍ୟନ୍ତ ତାହା ବି ବିଗିଡ଼ିଯିବ । ସୁପ୍ରାମେଣ୍ଟାଲ୍ ପାୱାର୍ ଓ ମ୍ୟାଟର୍‌ର ଯୁଦ୍ଧ ଖୁବ୍ ବିପଜ୍ଜନକ ଅବସ୍ଥାକୁ ଆସି ସାରିଲାଣି ପୃଥିବୀରେ । ସେଠି ବର୍ତ୍ତମାନ ଦରକାର— ଭେରି ଏଫେକ୍ଟିଭ୍ ଆଡ୍‌ମିନିଷ୍ଟ୍ରେସନ୍ । ମିସ୍ ପାକିସ୍ତାନ୍ ! ମୁଁ ବଡ଼ ଦୁଃଖିତ ତୁମେ ଆମ ସହିତ ଆଦୌ ସହଯୋଗ କରୁନ । ପ୍ରତି କଥାରେ ଉଠାଉଚ ଧର୍ମର ଦୁହା । ତମେ ପୃଥିବୀର ଛ' ବିଲିୟନ୍ ମଣିଷଙ୍କ ଭିତରୁ ବଛାଯାଇଥିବା ମାତ୍ର ଶହେ କୋଡ଼ିଏଙ୍କ ଭିତରୁ ଜଣେ । ଅଥଚ ତମେ ବୁଝନା ତମ ନିଜର ଗୁରୁତ୍ୱ । ମୁଁ ଖୁବ୍ ଦୁଃଖିତ !" ଡଃ. ଫ୍ରୟଡ୍ ଯେକୌଣସି ବିଶ୍ୱବିଦ୍ୟାଳୟର ପ୍ରଫେସରଙ୍କ ପରି ଛାତ୍ରଛାତ୍ରୀଙ୍କୁ ଚେତେଇଦେବାକୁ ଚାହିଁଲେ ତାଙ୍କ ନିଜ ନିଜର ବ୍ୟକ୍ତିଗତ ତଥା ସମଷ୍ଟିଗତ ଭବିଷ୍ୟତ ।

"ଭବିଷ୍ୟତର ମଣିଷମାନେ କ'ଣ ଲଙ୍ଗଳା ହେଇ ବୁଲିବେ ପ୍ରଫେସର୍ ଫ୍ରୟଡ୍, ବଣମଣିଷଙ୍କ ପରି ପୃଥିବୀ ଉପରେ ?" ମିସ୍ ଖମାର୍ ଆହ୍ୱାନ କଲା ପ୍ରଫେସରଙ୍କୁ ।

"ଉଲଗ୍ନତା ସଭ୍ୟତାର ପରିପନ୍ଥୀ ନୁହେଁ । ହିଂସା ହିଁ ସଭ୍ୟତାର ପରିପନ୍ଥୀ । ଉଲଗ୍ନତାର ମନସ୍ତତ୍ତ୍ୱ ବାରମ୍ବାର ପ୍ରମାଣ କରିଛି— ଏହା ହିଂସାର ମନସ୍ତତ୍ତ୍ୱ ନୁହେଁ— ବରଂ ଅହିଂସାର ।" ଡଃ. ଫ୍ରୟଡ୍ ତା'ପରେ ହଠାତ୍ ଅନୁରାଗ ପ୍ରତି ଆଙ୍ଗୁଳି ନିର୍ଦ୍ଦେଶ କଲେ । ପଚାରିଲେ, "ତମେ ପ୍ରସ୍ତୁତ ?"

"ମୁଁ ?" ସଙ୍କୁଚିତ ହୋଇଗଲା ଲାଜରେ ଅନୁରାଗ ।

"ହଁ ତମେ !" ଜୋର୍ ଦେଲେ ନିଜ ଉଚ୍ଚାରଣ ଉପରେ ପ୍ରଫେସର୍ ।

"ମତେ କ୍ଷମା କରନ୍ତୁ... ମତେ କ୍ଷମା କରନ୍ତୁ...", କହୁ କହୁ ପଛେଇ ପଛେଇ ଅନେକ ପଛକୁ ଚାଲିଯାଇଥାଏ ସେତେବେଳକୁ ଅନୁରାଗ ।

ଉଭୟ ପଶ୍ଚିମ ଗୋଷ୍ଠି ଓ ମିସ୍ ଖମାର୍ ମନସୁର୍ଙ୍କ ନେତୃତ୍ୱରେ ଗଠିତ ଇସ୍‌ଲାମିକ୍ ଏବଂ ଅନ୍ୟାନ୍ୟ ପ୍ରାଚ୍ୟ ଗୋଷ୍ଠି ଆରମ୍ଭ କରିଦେଲେ ଅଟ୍ଟହାସ୍ୟ ।

"କିନ୍ତୁ ତମରି ସଭ୍ୟତାରୁ ତ ସବାପ୍ରଥମେ ବାହାରିଥିଲା ନ୍ୟୁଡିଜିମ୍ ଆଉ ଅହିଂସାର ମୂର୍ତ୍ତିମନ୍ତ ସେଇ ଧର୍ମ ଯେଉଁଥିରୁ ଜନ୍ମ ନେଇଛନ୍ତି ତମ ଫାଦର୍ ଅଫ୍ ଦ ନେସନ୍— ଗ୍ରେଟ୍ ମହାତ୍ମା ଗାନ୍ଧି ?" ଆଶ୍ଚର୍ଯ୍ୟ ହେଲେ ପ୍ରଫେସର୍ ଅନୁରାଗର ପଶ୍ଚାତ୍‌ପଦତାକୁ ଲକ୍ଷ୍ୟ କରି ଖୁବ୍ । ତା'ପରେ ପୁଣି ଶୁଣେଇଲେ, "ତମେ ତମ ଦେଶରେ ମହାବୀର ଦିଗମ୍ବର ଜୈନଙ୍କ ମୂର୍ତ୍ତି ଦେଖିଥିବ ? ଅହିଂସାର ପ୍ରଥମ ଆଲୋକ ବିଶ୍ୱକୁ ଦେଖାଇଥିଲେ ଆଉ କିଏ ? ଜୈନ ଧର୍ମର ପ୍ରବର୍ତ୍ତକ ମହାବୀର ନା ? ତମ ଦେଶର ସର୍ବଶ୍ରେଷ୍ଠ ମନୀଷୀ ମହାବୀର, ଦିଗମ୍ବର ହେବାକୁ ମାନବ ସମାଜକୁ ଆହ୍ୱାନ ଦେଇ ନ ଥିଲେ କି ମିଃ. ଇଣ୍ଡିଆ ?"

ଅନୁରାଗ କିଛି ଉତ୍ତର ଦେବା ପୂର୍ବରୁ ମିସ୍ ମନସୁର୍ ପୁଣି ପ୍ରତିବାଦ ଜଣାଇଲେ, "ଆପଣ ସିକ୍ୟୁଲାରିଜିମ୍, ଧର୍ମନିରପେକ୍ଷତା କଥା କହୁଥିଲେ ପରା ? ପୁଣି ଧର୍ମ ଚର୍ଚ୍ଚା କରିବାକୁ ଲାଳାୟିତ ହେଲା ପରି ଜଣାପଡୁଛନ୍ତି ପ୍ରଫେସର୍ ସାହେବ..."

ହୋ ହୋ ହୋ ହେଇ ହସି ସମର୍ଥନ କଲେ ନିଜ ନେତ୍ରୀଙ୍କୁ ମଧ୍ୟପ୍ରାଚ୍ୟ ଓ ପ୍ରାଚ୍ୟ ଗୋଷ୍ଠି ।

"ଯେଉଁ ଧର୍ମରେ ଈଶ୍ୱର ବିଶ୍ୱାସ ଆବଶ୍ୟକ ପଡ଼େନା ସେପରି ଧର୍ମକୁ ଆପଣ କେଉଁ ଧର୍ମ ତାଲିକାରେ ରଖିବେ ମିସ୍ ଖମାର ?" ପ୍ରଫେସର୍ ଫିଙ୍ଗିଲେ ସେଇ ମୌଳିକ ପ୍ରଶ୍ନଟାକୁ, ପ୍ରତିବାଦ କରୁଥିବା ଗୋଷ୍ଠିଟି ଉପରକୁ । ପରେ ନିଜ ପ୍ରଶ୍ନର ଉତ୍ତର ଦେଲେ ସେ ମଧ୍ୟ, "ଈଶ୍ୱର କୌଣସି ଧର୍ମ ସୃଷ୍ଟି କରିନାହାନ୍ତି । ଧର୍ମ ସୃଷ୍ଟି କରିଛି ମଣିଷ ତା' ନିଜ ବିଶ୍ୱାସରୁ । ଈଶ୍ୱର ସୃଷ୍ଟି କରିଛନ୍ତି ପ୍ରକୃତି— ପ୍ରାକୃତିକ ନିୟମାବଳୀ । ତାହାହିଁ ବିଶ୍ୱଧର୍ମ । ସହଜ ହୁଅ, ସରଳ ହୁଅ । ନିଜର ପ୍ରକୃତିକୁ ଚିହ୍ନ । ବିଶାଳ ବିଶ୍ୱପ୍ରକୃତିକୁ ଜାଣ ।"

ଏତିକିବେଳେ ଥର୍ ପକ୍ଷରୁ ଆସିଲା ଅଫର୍—

"ଆମେ ସମସ୍ତେ ଏଠି ପ୍ରାକୃତିକ ଜୀବନ ଯାପନ କରିବାକୁ ଚାହୁଁ । ମୋର ଏ ବ୍ଲଡ଼ି ଟ୍ରାଉଜର୍‌ଟା ବାରମ୍ବାର ଗୋଟାଏ ସ୍ନେକ୍ ପାଲଟି ପଳାଉଚି ମୋ ଦେହରୁ । ମୁଁ ଯାକୁ ଫର୍ ଏଭର୍ ଡିଭୋର୍ସ କରିବାକୁ ଚାହେଁ— ମୋ ନେକେଡ୍ ବଡ଼ିଟାକୁ ନିଅନ୍ତୁ ପ୍ରଫେସର୍ ଫ୍ରୟେଡ୍ ଫର୍ ଦ ଏକ୍ସପେରିମେଣ୍ଟେସନ୍ !"

କହୁ କହୁ ତା'ର ସେଇ ଧୋତଡ଼ା ପ୍ୟାଣ୍ଟଖଣ୍ଡକୁ ଦେହରୁ କାଢ଼ି ଫୋପାଡ଼ିଦେଲା ଥର୍ । ପରେ ପରେ ସାରା ଓ୍ୱେଷ୍ଟର୍ଣ୍ଣ ବ୍ଲକ୍ ମଧ୍ୟ ନିଜ ନିଜ ପ୍ୟାଣ୍ଟ୍‌ଶାର୍ଟ କାଢ଼ି

ଫୋପାଡ଼ିଦେଲେ । ଝିଅ ପୁଅ ସମସ୍ତେ ପ୍ରାୟ ପଚାଶ ଷାଠିଏ ଜଣ । ସେମାନେ ଘେରିଗଲେ ଡଃ. ଫ୍ରୟଡ଼୍‌ଙ୍କୁ ନିଃସଙ୍କୋଚରେ ।

ଡକ୍ଟର ଫ୍ରୟଡ୍ ସେମାନଙ୍କୁ ଏକାଠି କଲେ । ଅଷ୍ଟଚକ୍ର ଓ କୁଣ୍ଡଳିନୀ ସମ୍ପର୍କରେ ପ୍ରାକ୍ଟିକାଲ୍ ଡିମନ୍‌ଷ୍ଟ୍ରେସନ୍ ଆରମ୍ଭ କଲେ ସେ ।

ଦୂରରେ ଥାଇ ଅନୁରାଗ ଶୁଣୁଥାଏ ପ୍ରଫେସର୍‌ଙ୍କ ସ୍ୱର—

"ଏଇ ! ଏଇ ତମର ମୂଳାଧାର ଚକ୍ର । ଏଇଟା ସ୍ୱାଧୀଷ୍ଠାନ ଅର୍ଥାତ୍ ସେକ୍ସ ହର୍ମୋନ୍‌ର ସେଣ୍ଟର୍ । ଯା ଉପରକୁ ନାହି ପାଖର ଏଇ ଏରିଆଟାକୁ କହନ୍ତି ସୂର୍ଯ୍ୟ । କେହି କେହି ବି କହନ୍ତି ମଣିପୁର । ଏଇ ଯାଗାରେ ତମ ଶରୀରର ଖୁବ୍ ଗୁରୁତ୍ୱପୂର୍ଣ୍ଣ ହର୍ମୋନ୍‌ଗ୍ଲାଣ୍ଡ୍ ରହିଚି— ପାନ୍‌କ୍ରିୟାଟିକ୍ ଗ୍ଲାଣ୍ଡ୍ । ଆଠଟାଯାକ ଚକ୍ର ଆଠଟା ମୁଖ୍ୟ ହର୍‌ମୋନ୍ ସିକ୍ରେଟିଂ ଗ୍ଲାଣ୍ଡ ସହିତ ସମ୍ପର୍କିତ ! ବ୍ରେନ୍‌ର ପିଟ୍ୟୁଟାରି ଗ୍ଲାଣ୍ଡର ସମ୍ପର୍କ ମଧ ସେଇ ଚକ୍ର ସହିତ ଯାହା ନାଁ ସହସ୍ରାର ! ଆଶ୍ଚର୍ଯ୍ୟ ହେଉଛି ବର୍ତ୍ତମାନ— ଏସବୁ ରହସ୍ୟ ମୁଁ ନିଜେ କାହିଁକି ଜାଣିପାରି ନ ଥିଲି ମୋ ପୂର୍ବ ଅବତାରରେ ?"

"ଏସବୁ ପୁଣି ଶିଖିଲେ କେମିତି ପ୍ରଫେସର୍ ଏ ଅବତାରରେ ?" କିଏ କେଜାଣି ପଚାରୁଥାଏ ସର୍କଲ ଭିତରୁ ।

"ସେ କଥା କହିବେ ତମକୁ ଯେତେବେଳେ ସେମାନେ ଆସିବେ ବକ୍ତୃତା ଦେବାକୁ...", ଅଟକିଗଲେ ପ୍ରଫେସର୍ ଫ୍ରୟଡ୍ ।

"କୋଉମାନେ ?" ଅନେକଗୁଡ଼ିଏ ସ୍ୱର ଶୁଣାଗଲା ଏଥର ସର୍କଲ୍ ଭିତରୁ ।

"ଯୋଉମାନେ ଏ ଜ୍ଞାନ ଲାଭ କରିଥିଲେ ହଜାର ହଜାର ବର୍ଷ ପୂର୍ବରୁ— ସେଇ ହିନ୍ଦୁ ବୈଜ୍ଞାନିକମାନେ..."

"ଆପଣ ଏତେ ହିନ୍ଦୁ ହିନ୍ଦୁ ହଉଚନ୍ତି କାହିଁକି ପ୍ରଫେସର ? ଆପଣ ଜଣେ ଛଦ୍ମବେଶୀ ବାବା ଫାବା ନୁହନ୍ତି ତ ?" ଉଠିଲା ହାସ୍ୟରୋଳ ସର୍କଲ୍ ଭିତରେ ।

"ଆଦୌ ନୁହେଁ— ସମଗ୍ର ବିଶ୍ୱ ଦିନେ କିନ୍ତୁ ହିନ୍ଦୁ ପାଲଟିଯିବ । ଆଶ୍ଚର୍ଯ୍ୟର ବିଷୟ ମଧ ମୋ ପାଇଁ ଏ କଥାଟା", ପ୍ରଫେସର ଫ୍ରୟଡ୍‌ଙ୍କ କଣ୍ଠସ୍ୱର ଦୁଃଖିତ ଶୁଭୁ ନ ଥାଏ ଅନୁରାଗକୁ ।

"ଆପଣ ନିଜେ ଇହୁଦୀ ଧର୍ମାବଲମ୍ବୀ ହେଇ ଏଭଳି କଥା କହିପାରୁଚନ୍ତି କେମିତି ପ୍ରଫେସର ? ଆପଣ ଇଣ୍ଡିଆ ଖବର ରଖି ନାହାନ୍ତି କିଛି ?" ଶୁଣିଲା ଅନୁରାଗ, ଚକ୍ରାକାରରେ ଡଃ. ଫ୍ରୟଡ୍‌ଙ୍କୁ ଘେରି ରହିଥିବା ପ୍ରାୟ ଷାଠିଏ ସତୁରୀ ଲଙ୍ଗୁଳି ଗୋରା କଳାଙ୍କ ଅଭିମତ ।

"କଅଣ ? କି ଖବର ?" ଜାଣିସିଆଣିଆ ଭଳି ପଚାରୁଥାନ୍ତି ପ୍ରଫେସର ।

"ନଅଶହ ନିୟୁତ ଲୋକ— ସମସ୍ତେ କରପ୍ଟ, ସମସ୍ତେ ଚରିତ୍ରଭ୍ରଷ୍ଟ । କି ଯେ କ୍ରାଇମ୍ ଅଛି ଯାହା ନ ହୁଏ ସେ ହିନ୍ଦୁ କଣ୍ଟ୍ରିରେ ? ତାଙ୍କ ନେତାମାନେ ପୃଥିବୀର ସବୁଠୁଁ ଦୁଶ୍ଚରିତ୍ର ବର୍ତ୍ତମାନ ।" ସେ ସ୍ୱର କାହାର ଜାଣିପାରିଲା ଅନୁରାଗ ।

ତାର ଜବାବ ଦେଲେ ତତ୍କ୍ଷଣାତ୍ ଡଃ. ଫ୍ରୟଡ୍,

"ପୃଥିବୀର ସର୍ବଶକ୍ତିମାନ ଦେଶର ଜଣେ ପ୍ରେସିଡେଣ୍ଟଙ୍କୁ ଏଇ ଅଳ୍ପଦିନ ତଳେ ତାଙ୍କ ଅଧୀନରେ ସର୍ଭିସ୍ କରୁଥିବା ଜଣେ ମେଜର୍ ଜେନେରାଲ୍ କେଉଁ ଭାଷାରେ ଭର୍ତ୍ସନା କରିଚନ୍ତି ଶୁଣିଚ ? 'ଡୋପ୍‌ସ୍ମୋକି', 'ଗେ-ଲଭିଂ', 'ଡ୍ରାଙ୍କ ଡଙ୍କିଂ', 'ଓ୍ୱମାନାଇଜର୍' !"

"କୋଉ ଦେଶ ? କୋଉ ଦେଶର ପ୍ରେସିଡ଼େଣ୍ଟ୍ ସେ ପ୍ରଫେସର୍ ?" ହଇଚଇ ପଡ଼ିଗଲା ସାଙ୍ଗେ ସାଙ୍ଗେ ମେଳି ଭିତରେ । ପରେ ପରେ ଝିଅପୁଅଙ୍କ ସମ୍ମିଳିତ ଉପହାସ ।

"ସାରା ପୃଥିବୀର ଚରିତ୍ରଭ୍ରଷ୍ଟ ଜନନେତାଗଣ ବର୍ତ୍ତମାନ ଏଇ ଶ୍ରେଣୀର । ମାନବ ସଭ୍ୟତା ତମର ଖୁବ୍‌ଶୀଘ୍ର ଧ୍ୱଂସ ପାଇବାକୁ ବସିଛି । ଗୋ ଆଣ୍ଡ୍ ହେଲ୍‌ପ୍ ଇଟ୍ । ବି କ୍ୱିକ୍ । ଆମ ହାତରେ ଆଉ ବୋଧେ ବେଶି ସମୟ ନାହିଁ । ଯୋଗ ପ୍ରାକ୍ଟିସ୍ କର । ଇଣ୍ଟିଗ୍ରେଟେଡ୍ ପର୍ସନାଲିଟି ଗଠନ କର ନିଜ ନିଜର । ଏଇ ଇଣ୍ଟିଗ୍ରେଟେଡ୍ ପର୍ସନାଲିଟିକୁ କୁହାଯାଏ ଚରିତ୍ର । ଆମର ଦରକାର ମାତ୍ର ଶହେ କୋଡ଼ିଏଟି ଦୃଢ଼ ବଳିଷ୍ଠ ଚରିତ୍ର । ପୃଥିବୀର ଛ' ବିଲିୟନ୍ ରୁଗ୍ଣ ଦୁର୍ବଳ ମାନବଗୋଷ୍ଠିକୁ ପୁଣି ଥରେ ସୁସ୍ଥ ସୁନ୍ଦର ସବଳ କରି ଥୋଇବାପାଇଁ ଦରକାର ମାତ୍ର ଗୋଟିଏ ଜିନିଷ ବନ୍ଧୁଗଣ ! ତା' ନାଁ ଚରିତ୍ର ! ଚରିତ୍ର ! ଚରିତ୍ର ! ବୁଝିଲ ?" ସେଦିନ ଡଃ. ଫ୍ରୟଡ୍‌ଙ୍କ କ୍ଲାସ୍ ଶେଷ ହେଲା ସେତିକିରେ ।

## [ ଛଅ ]

ସେଦିନ ସକାଳେ ଆଡ୍‌ମିନିଷ୍ଟ୍ରେଟିଭ୍ ବିଲ୍‌ଡ଼ିଂ ଆଗରେ ଚିତ୍କାର ଶୁଭୁଥାଏ, "ଇନ୍‌କିଲାବ୍ ଜିନ୍ଦାବାଦ୍... ଇନ୍‌କିଲାବ୍ ଜିନ୍ଦାବାଦ୍ ! ଆମର ଦାବୀ ପୂରଣ କର !"

ଚାଳିଶ ପଚାଶ ଛାତ୍ରଛାତ୍ରୀଙ୍କୁ ଏକାଠି କରି ନେତୃତ୍ୱ ଦେଉଥାଏ ଖମାର୍ ମନସୁର୍; ସେଇ ପାକିସ୍ତାନୀ ଝିଅ । ସାରା ମଧ୍ୟପ୍ରାଚ୍ୟ, ଦକ୍ଷିଣପୂର୍ବ ଏସିଆର ଛାତ୍ରଛାତ୍ରୀମାନେ ଏକାଠି ହେଇ ଠିଆ ହେଇଥାନ୍ତି ତା'ରି ପଛରେ । ସେମାନେ ବି ସ୍ୱର ମିଳେଇଥାଆନ୍ତି ସେଇ ଝିଅଟି ସାଙ୍ଗରେ, "ଇନ୍‌କିଲାବ୍ ଜିନ୍ଦାବାଦ୍..."

ଅଳ୍ପ ସମୟ ପରେ ବିଲ୍ଡିଂ ପୋର୍ଟିକୋକୁ ବାହାରି ଆସିଲେ ମାଡ଼ାମ୍ କ୍ୟୁରୀ ଯେ କିଛି ମାସ ତଳେ ଗୋଟିଏ ଗୋଟିଏ ମୁଦା ଲଫାପା ଜଣଜଣ କରି ସମସ୍ତଙ୍କ ହାତକୁ ଦେଇଥିଲେ । କହିଥିଲେ, ''ହୁସିଆର୍‌ରେ ରଖିବ । ଏଥିରେ ଅଛି ତମର ଆତ୍ମପରିଚୟ । ହୁଏତ ଚାରିବର୍ଷ ଭିତରେ ତମେ ଭୁଲିଯାଇ ସାରିଥିବ ତୁମ ନିଜ ନାଁ, ନିଜ ଠିକଣା ।''

ହସ ହସ ମୁହଁରେ ପଦାକୁ ବାହାରିଆସି ମାଡ଼ାମ୍ ସ୍ୱାଗତ ଜଣେଇଲେ ସମସ୍ତଙ୍କୁ ତାଙ୍କର ସ୍ୱାଭାବିକ ମାତୃବତ୍ସଳ ସ୍ନେହପୂର୍ଣ୍ଣ ଭାଷା ଓ ଭାବଭଙ୍ଗୀରେ । ପଚାରିଲେ,

''କ'ଣରେ ଝିଅ ! ଘର ମନେପଡୁଚି ? ମା ବାପା ମନେପଡୁଚନ୍ତି ? ଛୁଟିରେ ଯିବାକୁ ଚାହଁ ? ଠିକ୍ ଅଛି । ସେ ବ୍ୟବସ୍ଥା ଶୀଘ୍ର କରିଦିଆଯିବ । କିନ୍ତୁ ଗୋଟିଏ ସର୍ତ୍ତରେ— ସେଠୁ ଫେରିଲେ, ପୁଣିଥରେ ମୂଳରୁ ଆରମ୍ଭ କରିବାକୁ ହେବ । ପୁଣି ଚାରିବର୍ଷ ।''

''ଆମେ ମୋଟେ ଏଠିକି ଆଉ ଫେରିବାକୁ ଚାହୁଁନା । ଆମର ଖୁବ୍ ଟ୍ରେନିଂ ହେଇ ସାରିଲାଣି ମାଡ଼ାମ୍ । ଯୋଗ, ନ୍ୟୁଡିଜିମ୍, ହିନ୍ଦୁ ଆଇଜେସନ୍ ଇତ୍ୟାଦି ଇତ୍ୟାଦି । ଏ ଡଃ. ଫ୍ରୟଡ୍ ଆମକୁ କେତେଦିନ ଆଉ ଟର୍ଚ୍ଚର୍ କରିବେ ଏମିତି ? ଆମ ପାଠପଢ଼ା କେବେ ଆରମ୍ଭ ହେବ ?'' ମିସ୍ ଖମାର୍ ମାଡ଼ାମ୍‌ଙ୍କ ହାତକୁ ବଢ଼େଇଦେଲା ଏକ ଲମ୍ବା ରିପ୍ରେଜେଣ୍ଟେସନ୍ । କହିଲା, ''ଆମର ଦାବୀ ପୂରଣ ନ ହେବା ପର୍ଯ୍ୟନ୍ତ ଆମେ ବସିଲୁ ଏଇଠି । ହଙ୍ଗର୍ ଷ୍ଟ୍ରାଇକ୍ !''

ବସିପଡ଼ିଲା ମାଟି ଉପରେ ଖମାର୍ ମନସୁର୍ । ତା' ଦେଖା ଦେଖି ତା' ଦଳର ସମସ୍ତେ ବି ।

ମାଡ଼ାମ୍ କ୍ୟୁରି ଦାବୀପତ୍ର ଉପରେ ଆଖି ବୁଲେଇନେଲେ । ପ୍ରଥମ ଦାବୀଟାର ଉଲ୍ଲେଖ ଥିଲା ସେଥିରେ, ''ଡଃ. ଫ୍ରୟଡ୍‌ଙ୍କୁ ଡିସ୍‌ମିସ୍ କର ।'' ପରେ ପରେ ଅନ୍ୟାନ୍ୟ । ଯୋଗ ବଦଳରେ ରିଲିଜିୟନ୍ ପଢ଼ାଅ । ମଡ଼ର୍ଣ୍ଣ ନଲେଜ୍ ପାଇଁ ପଲିଟିକାଲ୍ ସାଇନ୍ସ, ହିଷ୍ଟ୍ରି, ଫିଲଜଫି, ଇଞ୍ଜିନିୟରିଂ ପ୍ରଭୃତି ପାଠ୍ୟକ୍ରମ ପ୍ରବର୍ତ୍ତନ କର । ତା'ଛଡ଼ା, ମଡ଼ର୍ଣ୍ଣ ଡିପ୍ଲୋମାସି ଶିକ୍ଷାପାଇଁ ଉଚିତ ବ୍ୟବସ୍ଥା କର । ସବାଶେଷରେ କ୍ୟାମ୍ପସ୍‌ରେ ଗୋଟିଏ ମସଜିଦ୍, ଗୋଟିଏ ଗୀର୍ଜା, ଗୋଟିଏ ସାଇନାଗଗ୍ ଆଉ ଗୋଟିଏ ସିଣ୍ଟୋ ମନ୍ଦିର ମଧ୍ୟ ନିର୍ମାଣ କର ।

ଦାବୀପତ୍ରଟିକୁ ପୁଣିଥରେ ମନଦେଇ ପଢ଼ିବାବେଳକୁ ମାଡ଼ାମ୍‌ଙ୍କ କାନରେ ପଡ଼ିଲା, ''ଆପଣ ପ୍ରତିଶ୍ରୁତି ଦେଇଥିଲେ ଏଠିକି ବଡ଼ ବଡ଼ ବକ୍ତାମାନେ ଆସିବେ— ଆଇନ୍‌ଷ୍ଟାଇନ୍, ଫ୍ରେଡ଼େରିକ୍ ନିତ୍‌ସେ, କାର୍ଲମାର୍କ୍ସ, ରସେଲ ପ୍ରଭୃତି । ଗଲେ

କୁଆଡ଼େ ସେମାନେ ? ଆଉ ଏ ଭଣ୍ଡ ହିନ୍ଦୁ ମଙ୍କଟା ଫ୍ରୟଡ୍ ଅବତାର ବୋଲି କହୁଚି ଆମକୁ ଅଥଚ ଶିଖୋଉଚି କୁଣ୍ଡଳିନୀ, ଷଡ଼ଚକ୍ରଭେଦ ଅଲ୍ ବ୍ଲାକ୍ ମ୍ୟାଜିକ୍ ! ଶୀଘ୍ର ତଡ଼ ଏ ସିଉଡ଼ୋ ସାଇକୋଲଜିଷ୍ଟ୍‌କୁ ଏଠୁ । କହୁଚି ପୁଣି—ଭୂତପ୍ରେତ ଅଛନ୍ତି । ପୁଣି ହିନ୍ଦୁଙ୍କ ତେତିଶକୋଟି କି ନବେକୋଟି ଆକ୍ରାନ୍ତ 'ଡିଟିଜ୍'ଗୁଡ଼ାକ ବି ଅଛନ୍ତି କୁଆଡ଼େ ଏ କ୍ୟାମ୍ପସ୍‌ରେ ! ଏଭଳି ପ୍ରିମିଟିଭ୍ ଫରେଷ୍ଟରେ ଆମେ ରହିପାରିବୁ ନାହିଁ ଜମାରୁ । ଆମକୁ ହଷ୍ଟେଲ୍‌କୁ ଫେରିଆସିବାକୁ ପରମିସନ୍ ଦିଅ ।''

ସବୁ ଶୁଣୁଥାନ୍ତି, ଦାବୀପତ୍ର ବି ପଢୁଥାନ୍ତି ମାଡ଼ାମ୍ ଏକା ସାଥିରେ । ପରେ ପରେ ମାଡ଼ାମ୍ ଡିକ୍ଲେୟାର୍ କଲେ ''ମଞ୍ଜୁର୍ । ଅଲ୍ ଡିମାଣ୍ଡସ୍ ଗ୍ରାଣ୍ଟେଡ୍ । ଏଥର ଉଠ । ଆସ ମୋ ସାଙ୍ଗରେ । ଆଗ ବ୍ରେକ୍‌ଫାଷ୍ଟ ଖାଇନିଅ । ମୁଁ ବ୍ୟବସ୍ଥା କରିଦଉଚି । ଆଜି ଡକ୍ଟର ଆଇନ୍‌ଷ୍ଟାଇନ୍ ନେବେ ତମର ପ୍ରଥମ କ୍ଲାସ୍ । ଯୋଗ କ୍ଲାସ୍ ବନ୍ଦ ।''

ଡକ୍ଟର୍ ଆଇନ୍‌ଷ୍ଟାଇନ୍ ? ଏଁ ? ଡକ୍ଟର୍ ଆଇନ୍‌ଷ୍ଟାଇନ୍ ? ଚହଳ ପଡ଼ିଗଲା ସବୁଆଡ଼େ । ପଶ୍ଚିମ ଗୋଷ୍ଠିର ଛାତ୍ରଛାତ୍ରୀମାନେ ଯୋଉମାନେ ଷ୍ଟ୍ରାଇକ୍‌ରେ ସାମିଲ ହେଇ ନ ଥିଲେ; କିନ୍ତୁ ଦୂରରୁ ଥାଇ ସବୁ ଲକ୍ଷ୍ୟ କରୁଥିଲେ, ସେମାନେ ବି ଖୁବ୍ ଉତ୍ସାହିତ ହୋଇପଡ଼ିଲେ ଆଇନ୍‌ଷ୍ଟାଇନ୍‌ଙ୍କ ଆସିବା ଖବର ପାଇଯିବା ମାତ୍ରେ ।

ଅନୁରାଗ କଣବାଡ଼ିଆ ହେଇ ଠିଆ ହେଇଥାଏ । ହିନ୍ଦୁ ବିରୋଧୀ ଆନ୍ଦୋଳନରେ ସେ ବା ଆଉ କ'ଣ କରିପାରିଥାନ୍ତା ? କେବଳ ଦ୍ରଷ୍ଟାଟିଏ ହେଇ ଦୂରରେ ଠିଆ ହେବାଛଡ଼ା ?

ଟାଇମ୍ ସ୍ଥିର ହେଲା— ସକାଳ ଏଗାରଟା ପନ୍ଦର । ସେତିକିବେଳେ ଆଇନ୍‌ଷ୍ଟାଇନ୍ ଲେକ୍‌ଚର୍ ହଲ୍‌ରେ ଉପସ୍ଥିତ ହେବେ । ସମସ୍ତେ ଠିକ୍ ସମୟରେ ହଲ୍‌ରେ ପହଞ୍ଚିଯିବା ଦରକାର ।

ଖମାର୍ ମନ୍‌ସୁର ଦଳ ତଳୁ ଉଠିପଡ଼ିଲେ । ଝାଡ଼ିଝୁଡ଼ି ହେଲେ । ଚାଲିଲେ ହଷ୍ଟେଲ୍ ଡାଇନିଂ ରୁମ୍‌କୁ ଏକାସାଙ୍ଗେ । ଆଜି ଜିତାପଟ ସେମାନଙ୍କର । ତା'ଛଡ଼ା ଛ'ମାସ ହେଲା ସମସ୍ତେ ପଡ଼ିଥିଲେ ଫିଲ୍ଡରେ । ଓଃ ! କି ଭୟଙ୍କର ଅବସ୍ଥା । ଗୁଡ଼ାଏ କୋଉ କାଳର ପ୍ରାଚୀନ ଗୁହା ! ତା' ଭିତରେ ଶୁଖିଲା ଘାସର ଶେଯ ପାରି ଶୁଆ ବସା । ଧ୍ୟାନ ନା ଲେମ୍ବୁ ଲୁଣ ! ଫଳମୂଳ ଖାଇ ହ୍ରଦରୁ ପାଣି ପିଇ ଗୋରୁଗାଈ ବାଘଭାଲୁ ମାଙ୍କଡ଼ ପାଲଟିଗଲାଣି ମଣିଷ ଜାଣ ଏଇ ମାସ କେତେଟା ଭିତରେ । ସେଥିରୁ ତ୍ରାହି ପାଇବା ମାତ୍ରେ ପ୍ରବଳ ଆନନ୍ଦ ଉତ୍ସାହ କଳରୋଳରେ କମ୍ପୁଥାଏ ହଷ୍ଟେଲ୍‌ର ଡାଇନିଂ ରୁମ୍ ।

ବ୍ରେକ୍‌ଫାଷ୍ଟ ବି ସର୍ଭ୍ ହେଲା ଚମତ୍କାର । ପୂରା ଓ୍ୱେଷ୍ଟର୍ଣ୍ଣ ଷ୍ଟାଇଲ୍‌ରେ ନୁହେଁ; ଅନେକଟା ପ୍ରିପାରେସନ୍ ମୁଗଲାଇ ଆଉ ଚାଇନିଜ୍ ମଧ୍ୟ । ବ୍ରେକ୍‌ଫାଷ୍ଟ ପରେ କଫି, ଟି । ସଫ୍ଟ ଡ୍ରିଙ୍କ୍, ମିଲ୍କସେକ୍, ଫ୍ରୁଟ୍ ଜୁସ୍ ବି ପ୍ରଚୁର ।

ଏଗାରଟା ପନ୍ଦର ପୂର୍ବରୁ ହଲ୍ ଭରପୂର । ସେଇ ହଲ୍, ଲାଉଞ୍ଜ ଭଳି ହଲ୍ ଯୋଉଠି ବସିଥିଲେ ପ୍ରଥମ ଦିନ ସେମାନେ । କ୍ଲୋଜ୍‌ସର୍କିଟ୍ ଟି.ଭି.ରେ ଦେଖିଥିଲେ ଆଇନ୍‌ଷ୍ଟାଇନ୍‌ଙ୍କ ଛବି । କିନ୍ତୁ ଆଜି ଛବିରେ ନୁହେଁ, ସଶରୀରେ ଆସି ବକ୍ତୃତା ଦେବେ ସ୍ୱୟଂ ଆଇନ୍‌ଷ୍ଟାଇନ୍ ! କମି ବଡ଼ ସୌଭାଗ୍ୟ ! ମଣିଷ ଜୀବନରେ ଏମିତି ସୌଭାଗ୍ୟ ଆସେ କେତେଜଣଙ୍କ ସତେ !

ଅନୁରାଗ ବସି ପଡ଼ିଲାଣି ବହୁତ ପୂର୍ବରୁ ସବାପ୍ରଥମ ଧାଡ଼ିରେ । ତା' ପାଖ ସିଟ୍‌ରେ ବସିପଡ଼ି ଥର୍ ହେଡ଼ରଡାହଲ୍ ପଚାରିଲା ଚୁପ୍‌ଚୁପ୍ ତା' କାନରେ, "ଆଇନ୍‌ଷ୍ଟାଇନ୍ କୋଉ ଧର୍ମର ଲୋକ ଜାଣ ?"

"କୋଉ ଧର୍ମ ?" ନ ଜାଣିଲା ପରି ଥର୍ ମୁହଁକୁ ଚାହିଁଲା ଅନୁରାଗ ଆଉ ଥର୍‌ର ଆଖି କେଉଁ ଭାଷା କହୁଚି ଜାଣିବାକୁ ଚାହିଁଲା ।

"ଇହୁଦୀ—ସେମାନେ ଇସ୍‌ଲାମ୍ ଧର୍ମର ପରମ ବନ୍ଧୁ ! ଜାଣିଥିବ ତ ?" ଥର୍ ତା'ପରେ ହଠାତ୍ ଚୁପ୍ ପଡ଼ିଗଲା । ତା ନାଲି ମୁହଁ ଆହୁରି ନାଲି ପଡ଼ିଗଲା । ଦିଶିଲା ଅବିକଳ ପାତିମାଙ୍କଡ଼ର ପଛପଟ, ଅର୍ଥାତ୍ ଦୁଇ ଜଂଘ ମଝି ଅଞ୍ଚଳର ରଙ୍ଗପରି— ଅରୁଣ ବର୍ଣ୍ଣ ।

"କ'ଣ ହେଲା ?" ଅନୁରାଗର ସନ୍ଦେହ ହେଲା । ବୁଲିପଡ଼ି ଦେଖିଲା— ପାଖ ସିଟ୍‌ରେ ମହମ୍ମଦ ବିରାଧୀବୀରବର ।

"ଆରେ ମିଃ. ବୀରବର ! ନମସ୍କାର ନମସ୍କାର", ଅଜାଣତରେ ନମସ୍କାର ଶବ୍ଦଟି ବାହାରି ଆସିଲା ଅନୁରାଗ ମୁହଁରୁ ବହୁଦିନ ପରେ । ଏ ପର୍ଯ୍ୟନ୍ତ ସେ କାହାକୁ 'ନମସ୍କାର' ନ କହି କହୁଥିଲା 'ଗୁଡ୍ ମର୍ଣ୍ଣିଂ' ବା 'ଗୁଡ୍ ନାଇଟ୍' ଇତ୍ୟାଦି । ନମସ୍କାର ଶବ୍ଦଟା ମୁହଁରୁ ବାହାରିଗଲା ପରେ ଟିକେ ଲଜ୍ଜିତ ହେଲା ସେ । କିନ୍ତୁ ବିରାଧୀର ମୁହଁ ଦିଶୁଥାଏ ଥମଥମ । ସତେକି ସେ ଖୁବ୍ କ୍ଷୁବ୍ଧ ଅନୁରାଗ ଉପରେ, ବୋଧହୁଏ ପାକିସ୍ତାନୀ ଝିଅ ଖମାର୍ ଏଇ ଦିନ କେତେଟା ଭିତରେ ତା' ମୁଣ୍ଡକୁ ପୂରା ବିଗାଡ଼ିଦେଇ ସାରିଲାଣି— ସନ୍ଦେହ ଦୃଢ଼ୀଭୂତ ହେଲା ଅନୁରାଗ ମନରେ । ପାଣିଠୁଁ ରକ୍ତ ଯେ ବେଶି ଘନ ଓ ଘନିଷ୍ଠତା ସୃଷ୍ଟିକରେ; କିନ୍ତୁ ରକ୍ତଠୁଁ ବେଶି ଘନ ଓ ଘନିଷ୍ଠ ମଣିଷର ଧର୍ମ ବିଶ୍ୱାସ; ଏଇ ଯୁକ୍ତିଟା ପୁଣି ବଦ୍ଧମୂଳ ହେଇ ଆସୁଥାଏ ଅନୁରାଗ ମନରେ— ମହମ୍ମଦ

ବିରାଧୀବୀରବରର ଭାରତୀୟ ଅର୍ଥାତ୍ ପୂରା ଓଡ଼ିଆ ଓଡ଼ିଆ ଚେହେରା ଓ ନାଁ ସତ୍ତ୍ୱେ ତା'ର ଧର୍ମ ବିଶ୍ୱାସଟା ଯେ ପୂରା ଅଲଗା ଏ ଧାରଣାଟି ସ୍ପଷ୍ଟ ହୋଇ ଆସୁଥିବା ଯୋଗୁଁ ତା' ମନରେ ।

ଆସିଲା ବିଲ୍ । ଧୁମ୍‌କିନା ବସିପଡ଼ିଲା ଥର୍‌ର ଆରପାଖ ଚେୟାର୍‌ରେ । ଘୁ'କିନା ନିଶ୍ୱାସ ଛାଡ଼ି କହିଲା, ''ବହୁତ ବହି ପଢ଼ିଛି ଡଃ. ଆଇନ୍‌ଷ୍ଟାଇନ୍‌ଙ୍କ ଥିଓରି ଅଫ୍ ରିଲେଟିଭିଟି ଉପରେ । ଆମ କାଲିଫର୍ଣ୍ଣିଆର କାଲ୍‌ଟେକ୍ ୟୁନିଭର୍ସିଟି ଲାଇବ୍ରେରିରେ ଭର୍ତ୍ତି ହେଇଛି ବହି । ତାଙ୍କର ସବୁଠୁଁ ବଡ଼ କଣ୍ଟ୍ରିବ୍ୟୁସନ୍ କ'ଣ ଜାଣ ?''

''କ'ଣ ?'' ପଚାରିଲା ଥର୍ ତା'ର ସଦା ପରିହାସପ୍ରବଣ ସ୍ୱରରେ ।

''ଗଡ୍ ଡଜ୍‌ନ୍‌ଟ୍ ପ୍ଲେ ଡାଇସ୍'', ଅନୁଚ୍ଚ କଣ୍ଠରେ, ମଜା କଲାପରି ଜବାବ ଦେଲା ବିଲ୍ ।

କିନ୍ତୁ, ଅନୁରାଗକୁ ତତ୍‌କ୍ଷଣାତ୍ ଠିକ୍ ଓଲଟା ଶୁଣାଗଲା, ''ଭଗବାନ୍ କେବଳ ପଶା ହିଁ ଖେଳୁଥାନ୍ତି । ଖାଲି ଖେଳନ୍ତି ନାହିଁ— ପଶାକାଠିଗୁଡ଼ାକୁ କୋଉଠି ଲୁଚେଇଦେବେ ଯେ ତମେ ସାରାଜୀବନ ଖୋଜିଲେ ବି ପାଇବ ନାହିଁ ।''

କିଏ କହିଲା ଏ କଥା ବୁଝି ନ ପାରି ଅନୁରାଗ ବିସ୍ମିତ ହୋଇ ଚାହିଁଲା ଚତୁର୍ଦ୍ଦିଗକୁ । ହଠାତ୍ ତା' ନଜର ପଡ଼ିଗଲା ଡିକ୍ ଉପରେ । ଡିକ୍ ବସିପଡ଼ିଲାଣି । କେତେବେଳେ ଆସି ବିଲ୍ ସେ ପାଖକୁ । ତା'ପରେ ଚାଲିଲା ବିଲ୍, ଡିକ୍‌ଙ୍କ ଆଲୋଚନା ।

ଡିକ୍ କହିଲା, ''ମୁଁ କ୍ୟାମ୍ବ୍ରିଜ୍‌ରେ ପଢ଼େ । ଆମ ୟୁନିଭର୍ସିଟି ପ୍ରଫେସର୍ ଷ୍ଟିଫେନ୍ ହକିଂସ୍ ହେଉଛନ୍ତି ଦ୍ୱିତୀୟ ଆଇନ୍‌ଷ୍ଟାଇନ୍ । ଶୁଣିଚ ତ ତାଙ୍କ ନାଁ ? ସେଇ କହିଚନ୍ତି ତାଙ୍କର ସେ ବିଖ୍ୟାତ ବହିରେ— 'ଏ ବ୍ରିଫ୍ ହିଷ୍ଟ୍ରି ଅଫ୍ ଟାଇମ୍'ରେ ଯେ 'ଗଡ୍ ନଟ୍‌ଓ୍ୱନ୍ଲି ପ୍ଲେଜ୍ ଡାଇସ୍, ହି ଇଭନ୍ ହାଇଡ୍‌ସ୍ ଇଟ୍ !' ହାଃ ହାଃ ! ଭଗବାନ୍ ପଶାକାଠି ଲୁଚାନ୍ତି ପୁଣି ! କି ପ୍ରକାର ଗଅଡ୍ ସେ ହେଇଥିବେ କହିଲ ଥର୍ ?'' ବେଶ୍ ବଡ଼ପାଟିରେ ହସିଉଠିଲା ଡିକ୍ ।

ଭଗବାନ୍‌ଙ୍କ ପଶାଖେଳ ଇମେଜ୍‌ଟା ଅନୁରାଗର ମୁଣ୍ଡ ଭିତରକୁ ପଶିଗଲା । ସ୍ୱର୍ଗରେ ଭଗବାନ୍ ବିଷ୍ଣୁ ପଶା ଖେଳୁଥିଲେ ଲକ୍ଷ୍ମୀଙ୍କ ସାଙ୍ଗରେ, ଯେତେବେଳେ କାନରେ ପଡ଼ିଲା କୁମ୍ଭୀର ଧରିଥିବା ଗଜର କାତର ପ୍ରାର୍ଥନା । ସାଙ୍ଗେ ସାଙ୍ଗେ ଚକ୍ରପେଶି ନକ୍ର ନାଶିଥିଲେ ସେ । ପୁଣି ଦ୍ୱାରକାରେ ଶ୍ରୀକୃଷ୍ଣ ତ ରୀତିମତ ପଶା ଖେଳନ୍ତି, ତାଙ୍କର ଆଠଟିଯାକ ପାଟରାଣୀଙ୍କ ସାଙ୍ଗରେ ଇତ୍ୟାଦି । ତେଣୁ

ଭଗବାନ୍‌ଙ୍କୁ ପଶାଖେଳିବା ମନା କଲେ କେମିତି ଡଃ. ଆଇନ୍‌ଷ୍ଟାଇନ୍ ? କିନ୍ତୁ ଏ ସବୁ ହୁଏତ ପୁରାଣ । ସତ କ'ଣ ? ତଥାପି ଆଶ୍ଚର୍ଯ୍ୟ ହେଲା ସେ— ଏ କଥା କାହିଁକି ଉଠିଲା ନ ବୁଝିପାରି । ବିଲ୍ ବା ଡିକ୍ ଭଳି ସେ ତ ନିଜେ ଆମେରିକାର ବିଖ୍ୟାତ କାଲ୍‌ଟେକ୍ ବା ଇଂଲଣ୍ଡର ବିଖ୍ୟାତ କ୍ୟାମ୍ବ୍ରିଜ୍‌ର ଛାତ୍ର ନୁହେଁ । ସେ ଗୋଟିଏ ଛୋଟିଆ କୋଚିଂ ସେଣ୍ଟର୍‌ର ଛାତ୍ର ଯୋଉଠି ଭଲ ଭଲ ପ୍ରଫେସର୍‌ମାନେ ମ୍ୟାଥମାଟିକ୍ସ, ଫିଜିକ୍ସ ଇତ୍ୟାଦି ପଢ଼ାନ୍ତି । ପିଲାମାନଙ୍କୁ ଇଞ୍ଜିନିୟରିଂ, ଡାକ୍ତରୀ ଇତ୍ୟାଦି ପ୍ରଫେସନାଲ୍ ଶିକ୍ଷାନୁଷ୍ଠାନରେ ପ୍ରବେଶ ପାଇଁ ଦରକାର ପଡୁଥିବା କମ୍ପିଟିଟିଭ୍ ପରୀକ୍ଷାରେ ପାରିଉଠିବାରେ ଖୁବ୍ ସାହାଯ୍ୟ କରନ୍ତି ସେମାନେ । ତଥାପି ମଧ ପରୀକ୍ଷାରେ ଯେତେ ଭଲ କଲେ ବି, ଇଞ୍ଜିନିୟରିଂ କି ଡାକ୍ତରୀ କଲେଜରେ ସିଟ୍ ପାଇଯିବ ଜଣେ ଏଥିରେ ଗ୍ୟାରେଣ୍ଟି ନ ଥାଏ କିଛି । କାରଣ ଭଗବାନ୍ ପଶା ଖେଳନ୍ତି । ମେରିଟ୍‌ରେ ସ୍ଥାନ ନ ଥାଏ କୌଣସି ଜାଗାରେ ଆଉ ଇଣ୍ଡିଆରେ । ଫାଷ୍ଟ ପିଲା ଲାଷ୍ଟ୍ ହେଇଯାଇପାରେ, ଲାଷ୍ଟ୍ ପିଲା ଫାଷ୍ଟ ହେଇଯାଇପାରେ ସିଲେକ୍ସନ୍‌ବେଳେ ।

ଭଗବାନ୍ ଓ ପଶାଖେଳ ଏଇ ଦୁଇଟା କଥାକୁ ନେଇ ଅନୁରାଗ ଘାରି ହଉଥିବାବେଳେ ସାରା ହଲ୍ ଭର୍ତ୍ତି ହେଇ ସାରିଥାଏ ।

ହଠାତ୍ ଆନାଉନ୍ସ କରାଗଲା ଡକ୍ଟର୍ ଆଇନ୍‌ଷ୍ଟାଇନ୍ ପହଞ୍ଚିଗଲେଣି । ଖସ୍ ଖସ୍ ଶବ୍ଦ ଶୁଭିଲା ହଲ୍ ଭିତରେ ସାଙ୍ଗେ ସାଙ୍ଗେ ପରେ ପରେ । ଅନୁରାଗ ଦେଖିଲା ସମସ୍ତେ ଖାତା ପେନ୍‌ସିଲ୍ ବାହାର କଲେଣି । ସେ ବି ବାହାରକଲା ତା' ପକେଟ୍‌ରୁ ଖାତା ପେନ୍‌ସିଲ୍ ।

ଠକ୍ ଠକ୍... ଠକ୍ ଠକ୍ । କରିଡର୍‌ରେ ଜୋତାଶବ୍ଦ । ଏଇ ତ ହଲ୍ ଭିତରକୁ ପଶି ଆସୁଛନ୍ତି ଡଃ. ଆଇନ୍‌ଷ୍ଟାଇନ୍ ! ପଛେ ପଛେ ହାଇ ହିଲ୍ ଜୋତା ପିନ୍ଧି ଖୁବ୍ ସମ୍ଭ୍ରମତା ସହକାରେ ଅନୁସରଣ କରୁଛନ୍ତି ମାଡ଼ାମ୍ କ୍ୟୁରି !

ଧଡ଼୍ ଧାଡ଼୍ ଉଠି ଠିଆ ହେଇପଡ଼ିଲେ ସାରା କ୍ଲାସ୍‌ଟାର ଛାତ୍ରଛାତ୍ରୀ । ଅନୁରାଗ ଠିଆ ହଉ ହଉ ଅନୁଭବ କଲା— ତା' ଗୋଡ଼ରେ ଜୋର୍ ନାହିଁ । ତା' ସାରାଦେହ ଥରୁଚି । ଆଉ, ତା' ଆଖିରୁ ବୋହି ଯାଉଚି ଧାର ଧାର ଲୁହ ଯାହାକୁ ସେ ଚେକ୍ କରିପାରୁନି ଆଦୌ । ମନେ ପଡ଼ିଯାଉଥାଏ ସେଇ ଦୃଶ୍ୟଟା— ଡ୍ରଗ୍ ଆଡିକ୍ଟ କହି ଲୁହାଛଡ଼ରେ ପିଟି ପକଉଛନ୍ତି ତା' ବାପା ଏଇ ମଣିଷଟିର ଫଟୋଗ୍ରାଫ୍‌କୁ । ଫିଙ୍ଗି ଦଉଚନ୍ତି ଭଙ୍ଗା କାଚ, ଭଙ୍ଗା ଫ୍ରେମ୍ ସାଙ୍ଗେ ଏ ମଣିଷର ଫଟୋଟାକୁ ତା' ବାପା ଝରକା ବାହାରକୁ, ରାସ୍ତା ଉପରକୁ । ଏଇ ଦିବ୍ୟ ମଣିଷ ଆଇନ୍‌ଷ୍ଟାଇନ୍ ସତରେ ଆସି ଠିଆ ହେଲେଣି କେତେବେଳେ ତା' ସାମ୍ନାରେ !

ହେ ଭଗବାନ୍ ! ଅନୁରାଗ ମୁହଁ ପୋତିଦେଲା ଲାଜରେ ତଳକୁ । ଆଖିର ଲୁହ ଅଟକୁ ନ ଥାଏ ଜମାରୁ ।

ମାଡ଼ାମ୍ କ୍ୟୁରି ଇଣ୍ଟ୍ରୋଡ୍ୟୁସ୍ କରାଇଦେଲେ— ପ୍ରଥମେ ଡଃ. ଆଇନ୍‌ଷ୍ଟାଇନ୍‌ଙ୍କୁ କ୍ଲାସ୍ ସାଙ୍ଗରେ, ପରେ ସାରା କ୍ଲାସ୍‌କୁ ମଧ୍ୟ ପ୍ରଫେସର୍‌ଙ୍କ ସାଙ୍ଗରେ । ପଦକରେ ଛିଡ଼ିଗଲା ଇଣ୍ଟ୍ରୋଡକ୍‌ସନ୍—

"ଏମାନେ ବଛା ହେଇଛନ୍ତି ଛ'ବିଲିୟନ୍ ମଣିଷଙ୍କ ଭିତରୁ । ଏଇ ମୋଟେ ଶହେ କୋଡ଼ିଏ । ଏମାନେ ହଉଚନ୍ତି କ୍ରିମ୍ । ମଣିଷ ଜାତିର ଭାଗ୍ୟବିଧାତା ତିଆରି ହେବେ ଯାଙ୍କରି ଭିତରୁ, ପ୍ରଫେସର ଆଇନ୍‌ଷ୍ଟାଇନ୍ !"

ଖୁସି ହେଲେ ଖୁବ୍ ଡଃ. ଆଇନ୍‌ଷ୍ଟାଇନ୍ । ମାଡ଼ାମ୍‌ଙ୍କ ଆଡ଼କୁ ଅନାଇ ପଚାରିଲେ, "ବ୍ଲାକ୍ ବୋର୍ଡ଼, ଚକ୍, ଡଷ୍ଟର୍ ? ପ୍ଲିଜ୍ !"

ସେ ସବୁ ଢେର୍ ଆଗରୁ ଯଥାସ୍ଥାନରେ ରଖି ଦିଆଯାଇଥାଏ । ମାଡ଼ାମ୍ ଦେଖେଇଦେଲେ ବ୍ଲାକ୍‌ବୋର୍ଡ଼ ଷ୍ଟାଣ୍ଡ । ଆଇନ୍‌ଷ୍ଟାଇନ୍ ଚାଲିଲେ ବ୍ଲାକ୍‌ବୋର୍ଡ଼ ପାଖକୁ । ମାଡ଼ାମ୍ ବସିପଡ଼ିଲେ ଗୋଟିଏ ଖାଲି ଚେୟାର୍‌ରେ ସମସ୍ତଙ୍କ ସାମ୍ନାରେ, କିନ୍ତୁ ଗୋଟିଏ କଡ଼କୁ ।

ଚକ୍ ଡବାରୁ ଲମ୍ବା ଚକ୍‌ଷ୍ଟିକ୍‌ଟିଏ ଉଠେଇଲେ ପ୍ରଫେସର୍ ଆଇନ୍‌ଷ୍ଟାଇନ୍ । ତା' ପରେ ଆରମ୍ଭ ହେଲା ତାଙ୍କ ବକ୍ତୃତା । ପ୍ରଥମେ ଗୋଟିଏ ଇକ୍ୱେସନ୍ ଲେଖିଲେ ସେ ବ୍ଲାକ୍ ବୋର୍ଡ଼ରେ । ତା'ପରେ, ତଳ ଧାଡ଼ିରେ ଆଉ ଏକ ଇକ୍ୱେସନ୍ । ପୁଣି ତା' ତଳ ଧାଡ଼ିରେ ଆଉ ଏକ ଇକ୍ୱେସନ୍ । ଏମିତି ଏମିତି ଦଶଟି ଇକ୍ୱେସନ୍ ଲେଖିସାରି କ୍ଲାସ୍ ଆଡ଼କୁ ଥରଟିଏ ଚାହିଁଲେ ସେ । ତାଙ୍କ ଗହଳ ନିଶ ତଳୁ ଉଙ୍କିମାରୁଥାଏ ଗୋଟିଏ ନିତ୍ୟାନ୍ତ ଅର୍ଥପୂର୍ଣ୍ଣ ସରଳ ସ୍ମିତହାସ ।

ଏହା ପରେ ଡଷ୍ଟର୍ ଉଠେଇଲେ ଡଃ. ଆଇନ୍‌ଷ୍ଟାଇନ୍ । ଦଶଟି ଧାଡ଼ି ଇକ୍ୱେସନ୍‌କୁ ପୂରା ଲିଭେଇଦେଲେ ସେ ବ୍ଲାକ୍ ବୋର୍ଡ଼ ଉପରୁ । ତା' ପରେ ଆରମ୍ଭ ହେଲା ରିଏଲ୍ ଏକ୍ସରସାଇଜ୍ । ଡଃ. ଆଇନ୍‌ଷ୍ଟାଇନ୍‌ଙ୍କ ହାତ ଚାଲିଲାଣି ସେତେବେଳକୁ ବ୍ଲାକ୍ ବୋର୍ଡ଼ ଉପରେ ଖୁବ୍ ଜୋର୍ ଜୋର୍ । ଗୋଟାକ ପରେ ଗୋଟାଏ ଗୋଟାକ ପରେ ଗୋଟାଏ । ଇକ୍ୱେସନ୍‌ଗୁଡ଼ାକ ଝରି ପଡୁଥାନ୍ତି ବ୍ଲାକ୍‌ବୋର୍ଡ଼ ଉପରେ ଧାଡ଼ି ଧାଡ଼ି ହେଇ ତଳକୁ ତଳ । ସାରା ବ୍ଲାକ୍ ବୋର୍ଡ଼ ଭର୍ତ୍ତି ହେଇଗଲା ପରେ ଅନୁରାଗକୁ ଲାଗିଲା— ଶୀତଦିନେ, କୋବି କିଆରିରେ, ବନ୍ଧାକୋବି ସିଆର ସିଆର ହେଇ ଏକର ଏକର ଜମି ଉପରେ ଲଗା ହେଇଚି କି ଆଉ !

ପୂରା ବ୍ଲାକ୍‌ବୋର୍ଡ଼ଟା କଭର୍ ହେଇଗଲା ପରେ ଡଃ. ଆଇନ୍‌ଷ୍ଟାଇନ୍ ପୁଣି ଥରେ କାନ୍ଧ ଉପରୁ ବେକ ଭାଙ୍ଗି ଅନିଶା କଲେ କ୍ଲାସ୍‌କୁ ତାଙ୍କର । ସେଇ ସରଳ ସ୍ମିତହାସଟି ଲାଖିଥାଏ ମୋଟା ମୋଟା ନିଶତଳେ, ଦୁଇ ଚିପାଓଠ ଉପରେ ତାଙ୍କର । ଏହା ପରେ ବାଁ ହାତରେ ଉଠେଇଲେ ଡଷ୍ଟର ପ୍ରଫେସର୍ । ଆଖି ପିଛୁଳାକେ ଅଦୃଶ୍ୟ ହେଇଗଲା ସାରାଟାଯାକ କୋବି କିଆରି ଅନୁରାଗ ଆଖିରୁ ।

ପରିଷ୍କାର ବ୍ଲାକ୍‌ବୋର୍ଡ଼ ଉପରେ ପୁଣି ରୁଆ ଚାଲିଲାଣି ନୂଆ କୋବିଚାରା । ଆଉ ଦଶ ମିନିଟ୍‌ରେ ବ୍ଲାକ୍‌ବୋର୍ଡ଼ ପୂରିଯିବ । କୋବି କ୍ଷେତରୁ ପାକଳ କୋବି କଟା ବେଳ ପୁଣି ଆସିଯିବ । ମନେ ମନେ ହସିଲାଣି ସେତେବେଳକୁ ଅନୁରାଗ । ଆଖି କଣରେ ଅନେଇଲା ସେ ଥର୍‌କୁ ଆଗ, ପରେ ବିଲ୍ ଆଉ ଡିକ୍‌କୁ । ସେମାନେ ନୋଟ୍‌ଖାତା ପେନ୍‌ସିଲ୍ ଗୁଞ୍ଜିଦେଇ ସାରିଲେଣି ଅନେକ ବେଳୁ ନିଜ ନିଜ ପକେଟ୍‌ରେ । ଏଥର ଆଖି ବୁଲେଇଲା ସେ ଏପାଖ ସିଟ୍‌ର ମହମ୍ମଦ ବିରୋଧୀ ବୀରବର ଆଡ଼କୁ । ଅାଁଟାଏ ମେଲେଇ ବିଚରା ବିରୋଧୀ ବୀରବର ଶୋଇଗଲାଣି ବୋଧେ କେତେବେଳୁ ।

ପୂରା ଘଣ୍ଟାଏ ଏକ୍ସର୍‌ସାଇଜ୍ କରି କରି ଥକି ପଡ଼ିଲେଣି ପ୍ରଫେସର୍ ଆଇନ୍‌ଷ୍ଟାଇନ୍ । ଶେଷରେ ପକେଟ୍‌ରୁ ରୁମାଲ୍ କାଢ଼ିଲେ । ମୁହଁରୁ ଚକ୍‌ଗୁଣ୍ଡ ଝାଳ ପୋଛିଦେଲେ । ହଠାତ୍ ସାରା କ୍ଲାସ୍‌କୁ ସ୍ତମ୍ଭୀଭୂତ କରିଦେଇ ପଚାରିଲେ,

''ଦେଖିଲ ?''

ଅନୁରାଗ ମୁଣ୍ଡ ଭିତରେ ଇଲେକ୍ଟ୍ରିକ୍ ସର୍କିଟାଏ ପାଶ୍ କରିଗଲା । ପୁଣି ଥରେ ସେଇ ବିସ୍ମୃତ ସ୍ମୃତି ଜାଗି ଉଠିଲା— ନୁରି ମାମୁଁ ସ୍କୁଟର୍ ଚଳେଉଚନ୍ତି ରକେଟ୍ ସ୍ପିଡ୍‌ରେ । ଗୋଟାଏ ଲମ୍ବାହାତ କୁଆଡୁ ଲମ୍ବି ଆସିଲା । ଝାମ୍ପିନେଲା ତାକୁ । ଆସ୍ତେ ଥୋଇଦେଲା— କାଦୁଅ ପଚ ପଚ ଧାନକ୍ଷେତ ମଝିରେ, ରାସ୍ତା କଡ଼ରେ । ପଚାରିଲା ସେ ହାତ ଅବିକଳ ଏଇ ପ୍ରଶ୍ନ—

''ଦେଖିଲୁ ?''

ରୁମ ଟାଙ୍କୁରି ଉଠିଲା— ଅନୁରାଗର ସାରା ଦେହ । ହଠାତ୍ ଗୋଟାଏ ଥର୍ମୋମିଟର୍‌କୁ ଫୁଟନ୍ତା ଗରମ ପାଣିରେ ବୁଡେଇଦେଲେ ଯେମିତି ସଟାଂକିନା ମର୍କ୍ୟୁରୀ କଲମ୍‌ଟା ପିଚ୍‌କି ଉଠିଯାଏ ଉପରକୁ ଉପରକୁ ଅବିକଳ ସେମିତି ଗୋଟାଏ ଫିଲିଂ ହେଲା ତା'ର ମେରୁଦଣ୍ଡ ଭିତରେ । ମର୍କ୍ୟୁରୀ ଉଠୁଥାଏ ସିଧା ମୂଳାଧାର ଚକ୍ରରୁ । ଚାହୁଁ ଚାହୁଁ ସ୍ୱାଧୀଷ୍ଠାନ ଚକ୍ର ଭେଦ କରିଗଲା । ପୁଣି ମୁଣ୍ଡ ଟେକି ସୁଁ ସୁଁ ହେଇ ଉଠିଲା ଆହୁରି ଉପରକୁ । ନାହିମୁଣ୍ଡା ଚାରିପାଖ ଦମ୍ ଦମ୍

କରି ଉଠିଲା— ସତେକି ନାହି ଭିତରେ ଡ୍ରମ୍ ପିଟୁଥାଏ କିଏ ଖୁବ୍ ଜୋର୍ ଜୋର୍... ଧମ୍ ଧମ୍ ଧମ୍ ଧମ୍ । ଉଚ୍ଛନ୍ନ ଲାଗିଲା ଅନୁରାଗକୁ । ସେ ଖାଲି ଛଟପଟ ହେଲା । କିନ୍ତୁ ଉଠିପଡ଼ି ପାଟିକରି କହିପାରିଲା ନାହିଁ ଆଦୌ, "ୟେସ୍ ସାର୍ ! ଦେଖିଲି ଦେଖିଲି ବୁଝିଗଲି ବୁଝିଗଲି... ବର୍ତ୍ତମାନ ଆରମ୍ଭ ହେଲା ସାର୍ ମୋ ବୁଝିବା ପ୍ରକ୍ରିୟା... ।" କିନ୍ତୁ ସେ କିଛି କହିପାରୁ ନ ଥାଏ । ତା' ପାଟି ଫିଟୁ ନ ଥାଏ । ସେ ଖାଲି ଛଟପଟ ହଉଥାଏ ।

ସେତେବେଳକୁ ଅନୁରାଗର ସୁଷୁମ୍ନା ନାଡ଼ିରେ କୁଣ୍ଡଳିନୀ ସର୍ପ ଯେ କେତେ ଉଚ୍ଚକୁ ଫଣା ଟେକି ଉଠି ସାରିଲାଣି ବିଚରା ଅନୁରାଗର ବୁଝିବାପାଇଁ କ୍ଷମତା ନ ଥାଏ । ସେ ଖାଲି ଛଟପଟ ଛଟପଟ ହଉଥାଏ ।

ପ୍ରଫେସର୍ ଆଇନ୍‌ଷ୍ଟାଇନ୍ ତା'ପରେ ଆଉ ପଦେ କଥା ନ କହି ଚକ୍ ଡଷ୍ଟର୍ ରଖିଦେଲେ । ଚୁପ୍‌ଚାପ୍ ବାହାରି ଚାଲିଗଲେ ହଲ୍ ବାହାରକୁ । ତାଙ୍କୁ ବଳେଇଦେବାକୁ ବାହାରିଗଲେ ପଛେ ପଛେ ତାଙ୍କର ମାଡ଼ାମ୍ କ୍ୟୁରି ।

"ଏ କ'ଣ ? ପଳେଇଗଲେ କାହିଁକି ଡଃ. ଆଇନ୍‌ଷ୍ଟାଇନ୍ ପଦେ କଥା ବି ନ କହି ?" ସାରା କ୍ଲାସ୍ ହାଉହାଉ ହଉଥାଏ ସେଇ ପ୍ରଶ୍ନରେ ।

ହାଉ ହାଉ ଚାଲିଥାଏ । ଫେରିଆସିଲେ ମାଡ଼ାମ୍ । ଘେରିଗଲେ ତାଙ୍କୁ ସମସ୍ତେ । ଉଭୟ ଇଷ୍ଟ ୱେଷ୍ଟ ବ୍ଲକ୍ ସମ୍ମିଳିତ ସ୍ୱରରେ ଚାର୍ଜ କଲେ ମାଡ଼ାମ୍‌ଙ୍କୁ, "କଅଣ କହିଲେ ଡଃ. ଆଇନ୍‌ଷ୍ଟାଇନ୍ ? ଆମେ ବିନ୍ଦୁବିସର୍ଗ ବୁଝିପାରିନୁ । ପଳେଇଲେ କାହିଁକି ?"

ମାଡ଼ାମ୍ କ୍ୟୁରି ପଦକରେ ଜବାବ ଦେଲେ ସେସବୁ ପ୍ରଶ୍ନର, "କାଲି ଆସିବେ ପ୍ରଫେସର ନିତ୍‌ସେ ।"

## [ ସାତ ]

ପରଦିନ ରୁଟିନ୍ ମୁତାବକ କ୍ଲାସ୍ ଆରମ୍ଭ ହେଲା । ଆସିଲେ ପ୍ରଫେସର୍ ଫ୍ରେଡେରିକ୍ ନିତ୍‌ସେ । ଜର୍ମାନୀର ବିଖ୍ୟାତ ଦାର୍ଶନିକ ଫ୍ରେଡେରିକ୍ ନିତ୍‌ସେ ଯେ ଦେଇଥିଲେ ବିଶ୍ୱକୁ ତାଙ୍କର ବିଖ୍ୟାତ ସୁପରମ୍ୟାନ୍ ଥିଓରି ।

ଆଜି ଜର୍ମାନୀ ଯୁବକ ହରମ୍ୟାନ୍‌ର ଦିନ । ବ୍ରେକ୍‌ଫାଷ୍ଟ୍ ଟେବୁଲରେ ହରମ୍ୟାନ୍‌କୁ ଘେରି ବସିଥାନ୍ତି ସମସ୍ତେ । ହରମ୍ୟାନ୍ ବକ୍ତୃତା ମାରୁଥାଏ ଫ୍ରେଡେରିକ୍ ନିତ୍‌ସେଙ୍କ ଉପରେ । କହୁଥାଏ, "ଏଇ ସେ ଯେ ପ୍ରଥମେ କହିଥିଲେ 'ଗଡ୍ ଇଜ୍ ଡେଡ୍—ଈଶ୍ୱର

ମୃତ ।'' ପୁଣି କହିଲା ହର୍‌ମ୍ୟାନ୍, ''ଏଇ ହେଲେ ହିଟ୍‌ଲର୍‌ଙ୍କ ଗଡ଼୍‌ଫାଦର୍ ! ୟାଙ୍କରି ଥିଓରିକୁ ଏକ୍ସପେରିମେଣ୍ଟ୍ କରୁଥିଲେ ହିଟ୍‌ଲର୍ । ଯଦି ସକ୍‌ସେସ୍‌ଫୁଲ ହୋଇଥାନ୍ତେ, ତେବେ ପୃଥିବୀ ଆଜିର ପୃଥିବୀ ହୋଇ ରହି ନ ଥାନ୍ତା— ଏମିତି ଶୋଚନୀୟ ରୂପ ନେଇ । ହିଟ୍‌ଲର୍‌ଙ୍କୁ ତମେ ଯାହା ପାର ତା' କହିପାର; କିନ୍ତୁ ସେ ଆଜିର ଗଣତାନ୍ତ୍ରିକ ଦେଶର ତଥାକଥିତ ରାଷ୍ଟ୍ରପତି ବା ପ୍ରଧାନମନ୍ତ୍ରୀଙ୍କ ପରି ଏଡ଼େ ନୀଚ ପ୍ରକୃତିର ଦୁଶ୍ଚରିତ୍ର ଛୋଟ ଲୋକ ନ ଥିଲେ ।''

''ତମେ ହର୍‌ମ୍ୟାନ୍ କ'ଣ ନାଜିବାଦରେ ତଥାପି ବିଶ୍ୱାସ କର ?'' ବିଲ ଥଟ୍ଟା କରୁଥାଏ ହର୍‌ମ୍ୟାନକୁ ।

''ନାଜିବାଦକୁ ତୁମେ ସିନା ଆମେରିକାନ୍ ଇଂଲିଶ୍ ଫ୍ରେଞ୍ଚବାଲେ କୁହ ଫାଶୀବାଦ— ଫ୍ୟାସିଜିମ୍ । ଆମେ କହୁ ନ୍ୟାସନାଲିଜିମ୍ । ସମଗ୍ର ପୃଥିବୀରେ ଜର୍ମାନୀ ଲୋକଙ୍କର ଚରିତ୍ର ଏଯାକେ ଅତୁଟ । ଦେଖିଲ ତ— ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ କଅଣ କଲୁ ଆମେ ? ତମେ ଭାଙ୍ଗି ଚୁରମାର୍ କଲ ଆମ ଦେଶ । ଆମ ସାଇଣ୍ଟିଷ୍ଟ୍‌ମାନଙ୍କୁ ଚୋରି କରିନେଲ । ନ୍ୟୁକ୍ଲିୟାର୍ ବମ୍ବ ତିଆରି କଲ କାହା ବୁଦ୍ଧିବଳରେ ? ଆମରି ସାଇଣ୍ଟିଷ୍ଟ୍‌ଙ୍କ ବୁଦ୍ଧିରେ ନା ? ଆଇନ୍‌ଷ୍ଟାଇନ୍ କିଏ ? ସେ ବି ତ ଆମରି ଦେଶର ନାଗରିକ ନା ?'' ହର୍‌ମ୍ୟାନ୍ ଆଜି ସତେକି କଣ୍ଟା ବାଡ଼ରେ ଲୁଗା ପକେଇ କଳି କରିବାକୁ ତିଆର ।

''ଛାଡ଼୍ ସେସବୁ ପୁରୁଣା କଥା ହର୍‌ମ୍ୟାନ୍ !'' ଏସ୍‌କେପ୍ ଫ୍ରେଞ୍ଚରେ କହିଲା ଆଶ୍ୱାସନା ଦେଲାଭଳି ସ୍ୱରରେ ବନ୍ଧୁ ହର୍‌ମ୍ୟାନ୍‌କୁ । କାନ୍ଧ ଥାପୁଡ଼େଇଦେଇ କହିଲା ପୁଣି ଏସ୍‌କେପ୍, ''ନିତ୍‌ସେଙ୍କ କଥା କହ । ଶୁଣିଚି, ସେ କୁଆଡ଼େ ପାଗଳ ହୋଇ ମଲେ । ପଢ଼ିଚି ତାଙ୍କ ବହି 'ଦସ୍ ସ୍ପେକ୍ ଜାରାଥୁଷ୍ଟ୍ର' । ଅନେକ କହନ୍ତି ନିତ୍‌ସେ ବହୁ ପରିମାଣରେ ଇଣ୍ଡିଆନ୍ ଥଟ୍‌ସ୍ ଦ୍ୱାରା ପ୍ରଭାବିତ । ତାଙ୍କର ଭଗବାନ୍ ମଲେଣି ଥିଓରି ଅନେକଟା ବୁଦ୍ଧିଜିମ୍ ବୁଦ୍ଧିଜିମ୍ ଭଳି ମନେ ହୁଏ ବି ମତେ ।''

''ହଁ ? ତା' ହେଲେ ତ ଭଲ'', ଚିଁ ଚିଁ ଶୁଭିଲା ଚ୍ୟାଓର ସ୍ୱର ମେଳି ଭିତରୁ ।

''ତା'ମାନେ ପୁଣି ସେଇ ଇଣ୍ଡିଆ ?'' କୋଉଠି ଥିଲା ମିସ୍ ଖମାର ମନସୁରଙ୍କ ମାଷ୍ଟ୍ରାଣୀ ପାଟି ଶୁଣାଗଲା, ''ଏମାନେ ଏଇ ସବୁ ଲୋକଙ୍କୁ କଅଣ ପାଇଁ ଡାକୁଚନ୍ତି ଏଠିକି ? କାଲି କ୍ଲାସ୍‌ରେ ବସି ବସି ଭକୁଆ ହୋଇ ଫେରିଲୁ । ବୁଢ଼ାଟାକୁ କଥା କହି ଆସେ ନାହିଁ ବୋଲି କିଏ ଜାଣିଥିଲା ଯେ । ଭାବିଥିଲୁ ଆସିବେ ଆଇନ୍‌ଷ୍ଟାଇନ୍ । କ'ଣ କହିଲେ କାଲି— ଆଲୁ ? ଖାଲି ଇକ୍ୱେସନ୍ ଇକ୍ୱେସନ୍ ଇକ୍ୱେସନ୍ । ପୁଣି ଆଜି ଡାକୁଚନ୍ତି ଗୋଟାଏ ନିହିଲିଷ୍ଟ୍‌କୁ । କଅଣ

କହିବ ସେ ନୂଆ କଥା ? ପୁଣି ସେଇ ଭଗବାନ୍ ମଲେଣି ? ହେ ଆଲ୍ଲା ! ଆମେ ଯଦି ପୁଣି ଶୁଣିବୁ ସେଇ ରିପିଟିସନ୍, କ୍ଲାସ୍‌ରେ ପ୍ରୋଟେଷ୍ଟ କରିବି ମୁଁ ଜରୁର୍ । ସେମାନେ ଏତେ ଲୋକଙ୍କୁ ଡାକୁଚନ୍ତି ଏଠିକି । ଥରେ ଯଦି ଡାକନ୍ତେ ଏଠିକି ଆମ ପ୍ରଫେଟ୍‌ଙ୍କୁ । ପାଣି ପିଏଇଦିଅନ୍ତେ ସେ ଏକାଥରେ ସମସ୍ତଙ୍କୁ ।''

''ତା'ହେଲେ ଆମେ ଡାକିବୁ ଆମ ପ୍ରଫେଟ୍ ମୋଜେସ୍‌ଙ୍କୁ'', ଶୁଭିଲା ପ୍ରତିବାଦ । ନିଶ ମୋଡୁଥାଏ ସୋଲମନ୍ ଜୀଉ ତା' ଗାର୍ଲଫ୍ରେଣ୍ଡ୍ ଇରାନୀ ଝିଅ ହାଇଫା କାନ୍ଧ ଉପରେ ହାତଟାଏ ଥାପି ।

ମିସ୍ ଖମାର୍ କଟମଟ କରି ଚାହିଁ ସେ ଥରେ ସୋଲମନ୍ ମୁହଁକୁ ତ ଥରେ ସେଇ ନିର୍ଲଜୀ ଇରାନୀ ମୁସଲିମ୍ ଝିଅ ହାଇଫା ମୁହଁକୁ । ସୋଲମନ୍ ସାଙ୍ଗରେ ସାଙ୍ଗ ନ ହବାକୁ ଅନେକଥର ବାରଣ କରିଥାଏ ଖମାର୍ ହାଇଫାକୁ । ଅନେକଥର ଚେତେଇ ଦେଇଥାଏ ତାକୁ ସେ, ''ଦେଖ, ହାଇଫା ତୁ ମୁସଲିମ୍ । ସେଇଟା ପୂରା ବିଧର୍ମୀ ଜିଉ ଟୋକା ଇସ୍ରାଏଲ୍‌ର । ତା' ସାଙ୍ଗେ ମିଳାମିଶା କରନା ଆଦୌ । ଏ ଆମ ସମସ୍ତଙ୍କୁ ଅପମାନ । ବୁଝୁଚୁ ? ଫ୍ୟୁଚର୍ ୱାର୍ଲଡ୍‌ଟା ଅନ୍ୟ କାହାରି ପାଇଁ ନୁହଁ । ଆମରି ଇସ୍‌ଲାମ୍ ଧର୍ମର ଜୟ ହେବ ଶେଷରେ ଦେଖିବୁ । ଏ ହିନ୍ଦୁ ଫିନ୍ଦୁ ଖ୍ରୀଷ୍ଟିୟାନ୍ ବୌଦ୍ଧ ସବୁ ଉଡ଼ିଯିବେ କୁଆଡ଼େ ନାଇଁ କୁଆଡ଼େ ।''

ହାଇଫା ଛାଡ଼ି ଦେଇଥିଲା ସୋଲମନ୍‌ର ସାଙ୍ଗ । କିନ୍ତୁ ଦେଖ ତ ତାକୁ ! ସେ ପୁଣି ଠିଆ ହେଲାଣି ଛଡ଼ା ବାଛୁରିଟାଏ ପରି ସେ ବଳଦ ସୋଲମନ୍‌ଟା ପାଖରେ । ଆଉ ସେ ବଳଦ କେମିତି ଚାଟୁଚି ଦେଖ ହାଇଫା ଭଳି ସୁନ୍ଦରୀ ଝିଅକୁ ।

ମିସ୍ ଖମାର୍ ଚିହିଙ୍କି ଉଠିଲେ ହାଇଫା ଉପରକୁ । ତା' କପ୍‌ଟାକୁ ଟେବୁଲ ଉପରେ କଚିଦେଇ ଚାଲିଲେ ଡଗ୍‌ଡଗ୍ ହେଇ ସିଆଡ଼େ— ହାଇଫାକୁ ସୋଲମନ୍‌ଠୁଁ ଛଡ଼େଇ ଆଣିବାକୁ ।

ପରେ ପରେ ଘଟିଗଲା ଖୁବ୍ ଅସୁନ୍ଦର ଘଟଣାଟାଏ । ଆଜି ପର୍ଯ୍ୟନ୍ତ ସେଣ୍ଟର୍‌ରେ ଏଭଳି ଅସୁନ୍ଦର ଦୃଶ୍ୟ ଅଭିନୀତ ହେବା ଦେଖି ନ ଥିଲା ଅନୁରାଗ । ହାଇଫାକୁ ସୋଲମନ୍ ପାଖରୁ ଛଡ଼େଇ ନବାବେଳେ ହାଇଫା ମାଇଲା ଗୋଟାଏ ଶକ୍ତ ଧକ୍କା ମିସ୍ ଖମାର୍ ମନସୁର୍‌ଙ୍କୁ । କାର୍ପେଟ୍ ଉପରେ ଚିତ୍‌ପଟାଙ୍ଗ୍ ହେଇ ପଡ଼ିଗଲେ ସେ । ପରେ ପରେ ମିସ୍‌ଙ୍କ ଅନୁରକ୍ତ କେହି ଜଣେ ଧାଇଁ ଆସିଲା । ସୋଲମନ୍ ଗାଲରେ ବାଜିଲା ଶକ୍ତ ଏକ ମୁଥି ।

ପ୍ରଚଣ୍ଡ କୋଳାହଳ ହଟ୍ଟଗୋଳ ଆଉ ମୁଥ ମରାମରି ଭିତରେ ଶୁଣାଗଲା କ୍ଲାସ୍ ଘଣ୍ଟା । ଚୁପ୍‌ଚାପ୍ ଚାଲିଲେଲେ ତା'ପରେ ସମସ୍ତେ କ୍ଲାସ୍‌କୁ ।

ଠିକ୍ ଏଗାରଟା ପନ୍ଦରରେ ଆସିଲେ ପ୍ରଫେସର୍ ନିତ୍‌ସେ । ବେଶି ଡେଙ୍ଗା ନୁହଁ କି ଗେଡ଼ା ନୁହଁ । ମଧ୍ୟମ ଉଚ୍ଚତାର ପତଳା ମଣିଷଟିଏ ଆସି ଠିଆହେଲେ କ୍ଲାସ୍ ସାମ୍ନାରେ । କିନ୍ତୁ ତାଙ୍କୁ ଦେଖି ଅନୁରାଗର ମନେହେଲା— ସେ ଆଦୌ ସେଠି ଉପସ୍ଥିତ ନ ଥିଲେ ସତେକି !

ବକ୍ତୃତା ଆରମ୍ଭ କଲେ ପ୍ରଫେସର୍ ନିତ୍‌ସେ ଜର୍ମାନ୍ ଭାଷାରେ । କିନ୍ତୁ ସେ ଭାଷା ସାଙ୍ଗେ ସାଙ୍ଗେ ଅନୁବାଦ ହେଇ ଯାଉଥାଏ ଶୁଦ୍ଧ ଓଡ଼ିଆରେ । ଆଶ୍ଚର୍ଯ୍ୟ ହେବାର ନ ଥିଲା କିଛି ସେଥିରେ । ଏ ସେଣ୍ଟର୍‌ରେ ମଣିଷ ମଣିଷ ଭିତରେ ଭାଷାଗତ ପ୍ରତିବନ୍ଧକ ତ ନ ଥିଲା ମୂଳରୁ । ସେ ବିଷୟ ମୂଳରୁ ସୂଚେଇ ଦେଇଥାନ୍ତି ମାଡ଼ାମ୍ କ୍ୟୁରି, ରିସେପ୍‌ସନ୍ କାଉଣ୍ଟର୍‌ରେ ପ୍ରତ୍ୟେକଙ୍କ ହାତକୁ ସେଇ ଢଉମୁଦ ଲଫାପାଟା ବଢ଼େଇଦେବା ମୁହୂର୍ତ୍ତରେଇ ।

ଆଜିର ବକ୍ତୃତା କାଲି ପରି ଆଦୌ ଏତେଟା ଦୁର୍ବୋଧ ନ ଥିଲା । କିଛି କିଛି ବୁଝି ହେଉଥାଏ ନିଶ୍ଚେ । କିନ୍ତୁ ପୂରାଟା ନୁହେଁ । ପ୍ରାୟ ଘଣ୍ଟାଏ ପରେ ପ୍ରଫେସର୍ ବକ୍ତୃତା ଶେଷ କଲେ । ହଠାତ୍ ପଚାରିଲେ, "ଦେଖିଲ ?"

ଚମକିପଡ଼ିଲା ଅନୁରାଗ । ପୁଣିଥରେ ସେଇ ଦଶା ଘଟିଗଲା ତା'ର କାଲି ପରି ଅବିକଳ । ଫୁଟିଲା ପାଣିରେ ଥର୍ମୋମିଟର୍‌କୁ ପୁଣି ବୁଡ଼େଇଦେଲାଭଳି ଉଠିଲା ସେ ଅନୁଭୂତି ଆଉଥରେ ମୂଳାଧାରରୁ ସ୍ୱାଧୀଷ୍ଠାନ ଚକ୍ର ଭେଦି ସୂର୍ଯ୍ୟ ଚକ୍ରକୁ । ନାଭିକେନ୍ଦ୍ର ଥର ଥର ହେଇଗଲା ଅନୁରାଗର— ପୁଣି ସେଇ ଡ୍ରମ୍ ବାଜା ଅତି ପାଖରୁ ଶୁଣିଲାବେଳର ଅନୁଭବ ପରି ଅବିକଳ ସେ ଅନୁଭୂତି । ଛଟପଟ ହେଇଉଠିଲା ସେ ।

ଉଠିଲା ପ୍ରତିବାଦ ପରେ ପ୍ରତିବାଦ ସାରା କ୍ଲାସ୍‌ରୁ, "ଆମେ କିଛି ବୁଝିପାରିଲୁନି ପ୍ରଫେସର୍— ପ୍ଲିଜ୍ ସିମ୍ପ୍ଲିଫାଇ ! ସରଳ କର ! ସରଳ କରି କୁହନ୍ତୁ । କଅଣ କହୁଚନ୍ତି ଆପଣ ?"

ପ୍ରଫେସର୍ ନିତ୍‌ସେ ଦିଶୁଥାନ୍ତି ଖୁବ୍ ମାନସିକ ଯନ୍ତ୍ରଣା ଭୋଗୁଥିବା ଜଣେ ବିଷାଦବାଦୀ ମଣିଷପରି । ବାରମ୍ବାର "ଆମେ ବୁଝିପାରିଲୁନି, ଆମେ ବୁଝିପାରିଲୁନି" ପ୍ରତିବାଦ ଶୁଣି ଅସ୍ଥିର ହୋଇପଡ଼ିଲେ ସେ । ମାଡ଼ାମ୍ କ୍ୟୁରିଙ୍କ ଉପରକୁ ଏକ ଉତ୍ତ୍ୟକ୍ତ ଚାହାଣି ହାଣି କାରଣ ଜାଣିବାକୁ ପଚାରିଲେ, "କିଏ ଏମାନେ ? ଏତେ ଡଲ୍ ଲୋକଙ୍କୁ ସିଲେକ୍ଟ କରିଚନ୍ତି ଆପଣ ପୃଥିବୀର ନେତୃତ୍ୱ ନେବାପାଇଁ ?

ଏଇ ନିର୍ବୋଧମାନେ ନେତୃତ୍ୱ ନେବେ ଛ'ବିଲିୟନ୍ ଇଡ଼ିୟଟଙ୍କର ? ମୋର ସମୟ ନଷ୍ଟ କରିବାପାଇଁ କି ଅଧିକାର ଅଛି କାହାର ? ମୁଁ ଯାଏ । ବହୁତ କାମ ବାକିପଡ଼ିଚି ତେଣେ । ଆଇ ଆମ୍ ସରି । ଥ୍ୟାଙ୍କ୍ୟୁ ଅଲ୍ ଲେଡ଼ିଜ୍ ଆଣ୍ଡ୍ ଜେଣ୍ଟଲ୍‌ମେନ୍ ।''

ଡଗଡଗ ହେଇ ହଲ୍‌ରୁ ବାହାରି ଚାଲିଗଲେ ପ୍ରଫେସର ଫ୍ରେଡ଼େରିକ୍ ନିଡ୍‌ସେ ।

ତା' ପରଦିନ, ତା' ପର ଦିନ ବି ସେଇ ଅବସ୍ଥା । ପ୍ରୋଗ୍ରାମ୍ ଅନୁସାରେ ଆସିଲେ ବିଶ୍ୱର ସର୍ବଶ୍ରେଷ୍ଠ ଜିନିୟସ୍‌ମାନେ—ବିଜ୍ଞାନ, ଦର୍ଶନ, ସାହିତ୍ୟ, ଅର୍ଥନୀତି, ରାଜନୀତି ବିଜ୍ଞାନ ସବୁ ବ୍ରାଞ୍ଚ୍‌ର ସମସ୍ତେ । ସମସ୍ତେ ନିଜ ନିଜ ଫିଲ୍ଡ୍‌ରେ ଜାଏଣ୍ଟ ଜଣେ ଜଣେ । କିନ୍ତୁ କଅଣ ସେମାନେ କହୁଥିଲେ ବା କହିବାକୁ ଚାହୁଁଥିଲେ କେହି ବୁଝିପାରିଲେ ନାହିଁ ।

କେବଳ ଅନୁରାଗ ପ୍ରତିଥର ବକ୍ତୃତା ଶେଷକୁ ଶୁଣୁଥାଏ ସେଇ ପଦକ କଥା— ''ଦେଖିଲୁ ?'' ଆଉ ସେତିକିରେ ଭୟଙ୍କର ଅବସ୍ଥା ହେଇଯାଉଥାଏ ତା'ର । ପେଟ ଭିତରଟା ଆଉଣ୍ଠି ଉଠୁଥାଏ ତା'ର । ମେରୁଦଣ୍ଡ ଭିତରଟା ଝିମ୍ ଝିମ୍ କରିଚାଲେ ଘଣ୍ଟା ଘଣ୍ଟା ଧରି । ଓଃ ବଡ଼ କଷ୍ଟ । ବଡ଼ କଷ୍ଟ ।

## [ ଆଠ ]

ପହଞ୍ଚିଲେ ଡଃ. ଫ୍ରୟଡ୍ ପୁଣିଥରେ ମାଡ଼ାମ୍ କ୍ୟୁରିଙ୍କ ଅନୁରୋଧ ଭାଙ୍ଗି ନ ପାରି ।

ସେତେବେଳକୁ ପ୍ରବ୍ଲେମ୍‌ଟା ପରିଷ୍କାର ଦିଶିଯାଇଥାଏ । ବହୁ ଆଲୋଚନା ତର୍କବିତର୍କ ପରେ ସମସ୍ତେ ରାଜି ହେଲେ ମାଡ଼ାମ୍‌ଙ୍କ ପ୍ରସ୍ତାବରେ । ଏତେ ବଡ଼ ବଡ଼ ମଣିଷଙ୍କ ଅମୂଲ୍ୟ ବକ୍ତୃତାମାଳା ମିସ୍‌ଫାୟାର୍ କାହିଁକି ହେଲା ଏହାର କାରଣ ତର୍ଜମା କରିବାକୁ ଡକାଗଲା ଡଃ. ଫ୍ରୟଡ୍‌ଙ୍କୁ ଆଉ ଥରେ ସେଣ୍ଟରକୁ ।

ସମସ୍ତଙ୍କ ପକ୍ଷରୁ କ୍ଷମା ମାଗିଲେ ମ୍ୟାଡ଼ାମ୍ ଡକ୍ଟର୍ ଫ୍ରୟଡ୍‌ଙ୍କୁ । ପଚାରିଲେ, ''କ'ଣ କରାଯିବ ବର୍ତ୍ତମାନ ? ରିଜେକ୍ଟ କରି ଦିଆଯିବ ଏ ସମସ୍ତଙ୍କୁ ? ଅନ୍‌ଫିଟ୍ ସାର୍ଟିଫିକେଟ୍ ଦେଇ ବିଦା କରି ଦିଆଯିବ ଯେଝା ଘରକୁ ? ସୁପ୍ଲାମେଣ୍ଟାଲ୍ ପ୍ରୋଜେକ୍ଟଟାକୁ ତେବେ ଗଡ଼େଇ ଦିଆଯିବ ଆଉ ଗୋଟାଏ ଯୋଡ଼ାଏ ଶତାବ୍ଦୀ ଆରପଟକୁ ?''

ହସିଲେ ଡଃ. ଫ୍ରୟଡ୍ । ସମସ୍ତଙ୍କୁ ଚାହିଁଲେ ଏକ କରୁଣ ଦୃଷ୍ଟିରେ ତା'ପରେ । ବହୁସମୟ ଚିନ୍ତା କରି ସେ ଗୋଟିଏ ପ୍ରସ୍ତାବ ପୁଣି ଆଣି ରଖିଲେ ସମସ୍ତଙ୍କ ବିଚାରପାଇଁ । ପଚାରିଲେ,

"ପୁଣି ଥରେ ଆରମ୍ଭ କରିପାରିବ ମୂଳରୁ ? କାରଣ ତମର ୟୋଗିକ୍ ପାୱାର୍ ପୂରାପୂରି ନଷ୍ଟ ହୋଇସାରିଛି ଏଇ ପନ୍ଦରଟା ଦିନ ଭିତରେ । ପାରିବ ଆରମ୍ଭ କରି ମୂଳରୁ ?"

ଗୁମ୍ ମାରି ବସିଥାଏ ସାରା କ୍ଲାସ୍ । ସବୁଠୁଁ ବିସ୍ମୟକର– ମିସ୍ ଖମାର୍ ମନସୁର୍ଙ୍କର କୌଣସି ପ୍ରତିବାଦ ଶୁଣାଯାଉ ନ ଥାଏ ଆଜି ।

"ତା'ହେଲେ ଫେରିଚାଲ ଓପେନ୍ ଫିଲ୍ଡକୁ । ପୁଣି ଥରେ ଚାଲ ସେଇ ହ୍ରଦ କୂଳକୁ । ଏହା ପରେ ଆହୁରି ଛ'ମାସ ରହିବାକୁ ପଡ଼ିବ ନିଜ ନିଜ କେଭ୍‌ରେ— ଗୁମ୍ଫା ଗହ୍ୱରରେ ପ୍ରତ୍ୟେକଙ୍କୁ । ଏଥର ଫ୍ରି-ମିକ୍ସିଂ ନଟ୍ ପରମିଟେଡ୍ । ସ୍ତ୍ରୀ ପୁରୁଷ ପୂରାପୂରି ଅଲଗା ରହିବେ ପରସ୍ପରଠାରୁ । ନୋ ଗ୍ରୁପିଜିମ୍ ଆଲାଉଡ୍ । ବ୍ରହ୍ମଚର୍ଯ୍ୟର ରିଗୋରସ୍ ଡିସିପ୍ଲିନ୍ । ୟୋଗର ପ୍ରଥମ ପାହାଚ ୟମ । ୟମର ଫାଷ୍ଟ କଣ୍ଡିସନ୍ ବ୍ରହ୍ମଚର୍ଯ୍ୟ । ରାଜି ?"

ପୂରା କ୍ଲାସ୍ ଘୁମୁରି ଉଠିଲା, "ୟେସ୍ ସାର୍ !" "ଖୁବ୍ ଖୁସି ହେଲି," ପ୍ରଫେସର୍ ଫ୍ରୟଡ୍ ସମସ୍ତଙ୍କୁ ଧନ୍ୟବାଦ ଦେଇସାରି ଉଠିଲେ ତା'ପରେ ।

[ ନଅ ]

ଅନୁରାଗ ଏଣିକି ନିଜ ଗୁମ୍ଫା ଭିତରେ ଦିନର ଅଧିକାଂଶ ସମୟ କଟାଇବାକୁ ପ୍ରତିଜ୍ଞାବଦ୍ଧ ହୋଇସାରିଥାଏ । ଆଗାମୀ ଛ'ଟା ମାସ ଖୁବ୍ କଠିନ ମାନସିକ ଏକାଗ୍ରତା ପାଇଁ ଧ୍ୟାନକୁ ଏକମାତ୍ର ପନ୍ଥା ରୂପେ ଆଦରି ନେଇଥାଏ ସେ ଓ ସେଥିପାଇଁ ଏକ ଲମ୍ବା କାର୍ଯ୍ୟସୂଚୀ ବି ପ୍ରସ୍ତୁତ କରିଦେଇଥାଏ, ଡଃ. ଫ୍ରୟଡଙ୍କ ଉପଦେଶ ଅନୁସାରେ । "ନିଜକୁ ପୂରାପୂରି ନିଜ ଭିତରେ ଅନୁଭବ କରିବାକୁ ଚେଷ୍ଟା କର । ଏଥିପାଇଁ ମୂଳରୁ ମୂଳରୁ ଖୁବ୍ କଷ୍ଟସାଧ୍ୟ ମାନସିକ ଶୃଙ୍ଖଳାର ଆବଶ୍ୟକ । ମଣିଷର ମନ ଏକ ଚମତ୍କାର ଦର୍ପଣ, ଯେଉଁଥିରେ ସମଗ୍ର ବିଶ୍ୱ ଏକ ସମୟରେ ସମ୍ପୂର୍ଣ୍ଣ ରୂପେ ପ୍ରତିଫଳିତ ହୋଇପାରେ । କିନ୍ତୁ ସାଧାରଣ ମଣିଷର ମନ ଦର୍ପଣଟି ଚୁର୍‌ମାର୍ ଅବସ୍ଥାରେ ନିଜ ଭିତରେ ପଡ଼ି ରହିଥାଏ । ଏଥିରେ ଯେଉଁ ପ୍ରତିବିମ୍ବ ମଣିଷ ଦେଖିବାକୁ ପାଏ, ତାହା କାଲିଡ଼ୋସ୍କୋପିକ୍— ଏକ ଜିନିଷ ଅସଂଖ୍ୟ ଆକାର ପ୍ରକାର ରୂପ ରଙ୍ଗ ନେଇ ଉଭା ହୁଏ । ପ୍ରଥମେ ମନକୁ ଯୋଡ଼ । ଗୋଟିଏ ଅଭଙ୍ଗା ପରିଚ୍ଛନ୍ନ ଦର୍ପଣ ଯଦି ହାତକୁ ଆସିଯାଏ, ତେବେ ତୁମର ଯୋଗଟ୍ରେନିଂ ସମ୍ପୂର୍ଣ୍ଣ ହେଲା ବୋଲି ବୁଝିବାକୁ ହେବ । ଏହା ପରେ ତୁମେମାନେ ଏଇ ଦୁଷ୍କର ବ୍ରହ୍ମଚର୍ଯ୍ୟ ଅର୍ଥାତ୍ ସେଲିବେସି ସଙ୍କଳ୍ପରୁ ଛୁଟି ନେଇପାର । କିନ୍ତୁ ସବୁଠୁଁ ଲାଭଜନକ ହେବ ତମପାଇଁ ସେତେବେଳେ ଗୋଟିଏ

ବିଷୟ— ସେଇଟି ହେଲା ତୁମେମାନେ ଯାହାଙ୍କୁ ଦୁର୍ବୋଧ ବୋଲି ମନେକରି ବ୍ୟର୍ଥତାରେ ଆଉଟିପାଉଟି ହେଇ ମୁଣ୍ଡବାଳ ଛିଣ୍ଡେଇ ପକାଉଥିଲ, ସେଥିରୁ ଅନେକଟା ମୁକ୍ତି ପାଇଯିବ ।'' ହ୍ରଦକୂଳ କ୍ଲାସ୍‌ରେ ଏତିକିମାତ୍ର ଉପଦେଶ ଦେଇ ଡଃ. ଫ୍ରୟଡ୍ ସମସ୍ତଙ୍କପାଇଁ ଏକ ସାଧାରଣ କାର୍ଯ୍ୟ ନିର୍ଘଣ୍ଟ ସ୍ଥିର କରିଦେଲେ ।

''ଆମେ ତେବେ ଏହା ପରେ ଡଃ. ଆଇନ୍‌ଷ୍ଟାଇନ୍‌ଙ୍କ ସେଇ କିଟିମିଟିଆ ଇକ୍ୱେସନ୍‌ଗୁଡ଼ାକୁ ବୁଝିପାରିବୁ ?'' ଥର୍ ସମସ୍ତଙ୍କ ତରଫରୁ ପଚାରିଥିଲା ସେଦିନ ।

''ନିଶ୍ଚୟ'' ଅନୁରାଗର ଆତ୍ମବିଶ୍ୱାସକୁ ଦୃଢ଼ କଲା ପରି ଶୁଣାଗଲା ଡଃ. ଫ୍ରୟଡ୍‌ଙ୍କ ମନ୍ତବ୍ୟ, ''ଇକ୍ୱେସନ୍ ଗୋଟିଏ ମସ୍ତିଷ୍କପ୍ରସୂତ ମାନବିକ ଭାଷା କେବଳ । ଏ ଭାଷା ମଣିଷର ଭାବଜଗତରୁ ଉତ୍ପନ୍ନ । ତମେମାନେ ମ୍ୟୁଜିକାଲ୍ ନୋଟେସନ୍ ଦେଖିଥିବ । ଖାଲି ନୋଟେସନ୍ ସିଟ୍‌ଗୁଡ଼ାକୁ ଦେଖି ତମେ କ'ଣ ସଙ୍ଗୀତ ବୁଝିପାର ? ସଙ୍ଗୀତକୁ ବୁଝିବାକୁ ହେଲେ ନୋଟେସନ୍‌ଗୁଡ଼ିକୁ କଣ୍ଠରେ ବା ବାଦ୍ୟଯନ୍ତ୍ରରେ ଠିକ୍ ଠିକ୍ ଧ୍ୱନୀତ କରାଯିବା ଆବଶ୍ୟକ । ପ୍ରଫେସର୍ ଆଇନ୍‌ଷ୍ଟାଇନ୍ ତମ ପାଇଁ ସେଇଭଳି କେତୋଟି ନୋଟେସନ୍ ସିଟ୍ ବନାଇଥିଲେ କେବଳ । ତମେମାନେ ସେଗୁଡ଼ିକର ଅର୍ଥ ନ ବୁଝିପାରିବାର କାରଣ— ନୋଟେସନ୍ ଅନୁଯାୟୀ ତମ ଚିତ୍ତରେ ଧ୍ୱନନ ହୋଇପାରି ନ ଥିଲା ପ୍ରତି ନୋଟେସନ୍‌ର ମ୍ୟୁଜିକ୍ । ସେଥିପାଇଁ ସେସବୁ ଥିଲା ତମପାଇଁ ଦୁର୍ବୋଧ । ଏଥର ମୋ କଥା ମାନ । ମନକୁ ସଂଯତ କର । ଦେଖିବ ଆରଥରକୁ ତମେମାନେ ଠିକ୍ ବୁଝିପାରିବ ଡଃ. ଆଇନ୍‌ଷ୍ଟାଇନ୍‌ଙ୍କ ଭାଷା ।''

''ସେ ସବୁ ଠିକ୍ । କିନ୍ତୁ ଆମେ ଫ୍ରେଡ଼େରିକ୍ ନିତ୍‌ସେଙ୍କ ଭାଷାରୁ ବିନ୍ଦୁବିସର୍ଗ ନ ବୁଝିପାରିବାର କାରଣ ?'' ବିଲ୍ ଉଠାଇଥିଲା ଆଉ ଏକ ପ୍ରଶ୍ନ,'' ଏଠି ତ ଏଭଳି ବ୍ୟବସ୍ଥା କରିଛନ୍ତି ଆପଣମାନେ ଯେ ଏ ମୂଷାଖିଆ ବ୍ରଦର ଚାଓର ମାଣ୍ଡାରିନ୍ ଭାଷାକୁ ସମ୍ପୂର୍ଣ୍ଣ ନିରାମିଷାଶୀ ଇଣ୍ଡିୟାନ୍ ବ୍ରଦର୍ 'ଆନି' ଆମର ଖୁବ୍ କ୍ଲିୟର୍‌ଲି ଅଣ୍ଡରଷ୍ଟାଣ୍ଡ୍ ପାରୁଚି କୁଆଡ଼େ ତା' ନେଟିଭ୍ ଲାଙ୍ଗୁଏଜ୍ ଓରିଆରେ । ତେବେ ଆଇନ୍‌ଷ୍ଟାଇନ୍‌ଙ୍କ ଇକ୍ୱେସନ୍‌ଗୁଡ଼ାକୁ କାହିଁକି ଆପଣଙ୍କ କମ୍ପ୍ୟୁଟର୍ ଟ୍ରାନ୍ସଲେଟ୍ ନ କରିପାରୁଚି ପୃଥିବୀର ସବୁ ଭାଷାଭାଷୀଙ୍କ ବୋଧଗମ୍ୟ ହେବାପରି ଅନ୍ତତଃ କୌଣସି ଏକ ଭାଷାରେ ? ମିଷ୍ଟ୍ରିଟା ପ୍ରକୃତରେ କ'ଣ ?''

ଅନୁରାଗକୁ ବିଲ୍ ଡାକେ ''ଆନି'' ଗେଲରେ ଗେଲରେ । କିନ୍ତୁ ଚାଓକୁ ମୂଷାଖିଆ ବୋଲି ସେ ଡାକିବା ଦ୍ୱାରା ଚାଓ ଖୁବ୍ ପ୍ରତିକ୍ରିୟାଶୀଳ ହୋଇଉଠି ପାଟି କଲା, ''ଥ୍ୟାଙ୍କ୍ ୟୁ ମିଃ. 'ଗେ' !''

'ଗେ' ଶବ୍ଦଟା ଶୁଣିଲା ମାତ୍ରେ ବିଲ୍ କଟମଟ କରି ଚାହିଁଲା ଚାଓକୁ । ସମସ୍ତେ ହସିଉଠିଲେ ।

ଡଃ. ପ୍ରୟଡ୍ ତା'ପରେ ସାରା କ୍ଲାସ୍‌କୁ କଣ୍ଟ୍ରୋଲ୍ କରିନେବାକୁ ହଠାତ୍ ଏକ ନୂଆରିକମ ସାଇକୋଲଜିକାଲ୍ ଏକ୍ସରସାଇଜ୍‌ରେ ଏନ୍‌ଗେଜ୍ କରିଦେଲେ ସମସ୍ତଙ୍କୁ ଏକାବେଳେ । ବିନା ଉପକ୍ରମଣିକାରେ ହଠାତ୍ ପ୍ରଫେସର୍ ସମସ୍ତଙ୍କ ଦୃଷ୍ଟି ଏକାଥରକେ ପରିଚାଳିତ କରିଦେଲେ ଗୋଟିଏ ଦିଗରେ । ତାଙ୍କ ପାଟିରୁ ବାହାରିଗଲା,

"ହେଇ ଦେଖ ଦେଖ ! ସେଠି କଅଣ ଘଟୁଚି ଦେଖିଲଣି ? ଇସ୍ କି ମାରାତ୍ମକ ! କି ବିପଜ୍ଜନକ !" ପରେ ପରେ ଆଙ୍ଗୁଠି ଦେଖେଇ ଶିହିରି ଉଠିଲେ ପ୍ରଫେସର୍ କୌଣସି ଏକ ମର୍ମନ୍ତୁଦ ଦୃଶ୍ୟ ସ୍ପଷ୍ଟ ଦେଖିପାରୁଥିଲା ଭଳି ।

ସମସ୍ତେ ଏକାବେଳକେ ମୁହଁ ବୁଲେଇଲେ ପ୍ରଫେସର୍‌ଙ୍କର ଆଙ୍ଗୁଠି ଯୋଉଆଡ଼କୁ ଇଙ୍ଗିତ କରୁଥାଏ, ସେଇ ଦିଗରେ । କିନ୍ତୁ କାହିଁ କଅଣ ? କିଛି ତ ନାହିଁ ! ଛୋଟପିଲାଙ୍କୁ ଭଣ୍ଡେଇଲା ଭଳି ଏ ପିଲା ଖେଳ ଖେଳୁଛନ୍ତି ନା କଅଣ ଡଃ. ପ୍ରୟଡ୍ ? ସମସ୍ତେ ସେଇଆ ହିଁ ସନ୍ଦେହ କଲେ । ହସିଲେ ।

କିନ୍ତୁ, ଡଃ. ପ୍ରୟଡ୍‌ଙ୍କ ସ୍ୱର ସିରିୟସ୍ । ତାଙ୍କ ଦୃଷ୍ଟିରେ ସ୍ପଷ୍ଟ ଦିଶୁଥାଏ ସେଇ ଭୟଙ୍କର ଦୃଶ୍ୟଟା ନିଶ୍ଚେ । "ଚାହଁ !" ଆତଙ୍କଭରା କଣ୍ଠରେ କହିଉଠିଲେ ସେ, "ହେଇ ସେଠି ! ସେ ପର୍ବତ ଶୃଙ୍ଗ—ଦେଖୁଚ ? ମଣିଷ ହାତର ପାଞ୍ଚଟା ଆଙ୍ଗୁଠି ଭଳି ସେଇ ପାଞ୍ଚଟା ଶୃଙ୍ଗ— ଦେଖୁଚ ? ଠିକ୍ ମଝି ଆଙ୍ଗୁଠିକୁ ତା'ର ଧ୍ୟାନ ଦେଇ ଦେଖ । ଦେଖୁଛ ? ଦେଖିପାରୁନ ? ଧ୍ୟାନ ଦିଅ ଦେଖିପାରିବ । ମତେ ତ ସ୍ପଷ୍ଟ ଦିଶୁଚି ! ଆହା ବିଚରା ! ଏଡ଼େ ଟିକେ ପିଲା ଗଲା କେମିତି ଆଗ ସେଠିକି ଯେ । ମତେ ତ ଜଣାପଡୁଚି ଅତି ସାନ ପିଲା— ବୋଧହୁଏ ପାଞ୍ଚ ଛ'ବର୍ଷର । ଏଡ଼େ ଟିକେ ଶିଶୁ ଚଢ଼ିଲା କେମିତି ଏତେ ଉଚ୍ଚକୁ ? କିନ୍ତୁ ନାଃ । ସେ ଚଢ଼ି ନାହିଁ । ନିଶ୍ଚେ କୌଣସି ଦୁର୍ବୃତ୍ତର କାଣ୍ଡ ଏ । ପିଲାଟାକୁ ଉଠେଇ ନେଇଚି । ଏକାକୀ ତାକୁ ସେଭଳି ବିପଜ୍ଜନକ ସ୍ଥିତିରେ ଛାଡ଼ିଦେଇ ଖସି ଆସି ମଜା ଦେଖୁଚି । ଇସ୍ ! ମଣିଷର ଅନ୍ତରଙ୍ଗ ପ୍ରବୃତ୍ତି କି ଜାନ୍ତବ ! ଏଡ଼େ ଟିକେ ମାନବଶିଶୁ, ଅସହାୟ ମାନବ ଶିଶୁକୁ ନେଇ କି କ୍ରୂର ପରିହାସ ! ଦେଖୁଛ ? ଦେଖୁଛ ? ସେ ଟିକି ପିଲାଟି ବର୍ତ୍ତମାନ ଅସହାୟଭାବେ ସମଗ୍ର ମାନବଜଗତକୁ ଅନାଇ ରହି ସାହାଯ୍ୟ ଭିକ୍ଷା କରୁଛି କେଉଁ ଭାଷାରେ ଶୁଣିପାରୁଛ ? ଶୁଣ ! ଶୁଣ ! ଆହା ! ବର୍ତ୍ତମାନ ଆଉ ତା'ର ସାହାଭରସା କେହି ନାହିଁ ବୋଲି ସେ ନିଶ୍ଚେ ବୁଝିସାରିଛି । ଓଃ ଗଡ୍ ! ଦେଖ ତ ସେ ପିଲାର ସାହସକୁ ।

ଆରେ ଆରେ ! ଏଥର ସେ ନିଜେ ଚେଷ୍ଟା କଲାଣି ନିଜର ସେଇ ଟିକି ଟିକି ଯୋଡ଼ିଏ ଗୋଡ଼, ଯୋଡ଼ିଏ ହାତର ସାହାଯ୍ୟ ନେଇ ନିଜ ବଳରେ ନିଜେ ଓହ୍ଲେଇ ଆସିବାକୁ । ନା, ସେ ଆଦୌ ପାରିବ ନାହିଁ । ଆଦୌ ପାରିବ ନାହିଁ । ଏଭଳି ସାଂଘାତିକ ସ୍ଥିତିରୁ ସେ କ'ଣ ସତେ ଆଉ ବର୍ତ୍ତିବ ? ଏଇ ଦେଖ ଦେଖ ! ସେ ବର୍ତ୍ତମାନ ଓହଳି ପଡ଼ିଲାଣି ତା'ର ଟିକିଟିକି ହାତ ଯୋଡ଼ାକରୁ— ଗୋଡ଼ ତଳେ ତା'ର ଆଉ ଆଶ୍ରା କିଛି ଥିଲାଭଳି ତ କାହିଁ ଦିଶୁନି ମତେ ! ହେ ! ସମସ୍ତେ ଏଠି ବସିରହିଚ କଅଣ ପାଇଁ ? ତମେ କ'ଣ ପଥର ପାଲଟିଗଲଣି ନା କ'ଣ ? ଯାଅ ! ଧାଅଁ ! ହେଲ୍ପ୍ ଦ୍ୟାଟ୍ ଚାଇଲ୍ଡ ! ସେଭ୍ ହିମ୍, ସେଭ୍ ହିଜ୍ ଲାଇଫ୍ । ଗୋ ! ରନ୍ ! କ୍ୱିକ୍ !''

ପ୍ରଥମେ ଥର୍, ପରେ ପରେ ବିଲ୍, ତା' ପଛରେ ଡିକ୍, ତା' ପଛକୁ ପଛ ଅନ୍ୟ ସମସ୍ତେ ଭୁସ୍‌କିନା ଉଠିପଡ଼ିଲେ । ସମଗ୍ର ୱେଷ୍ଟର୍ଣ୍ଣ ବ୍ଲକ୍ ଧାଉଁଥାଏ ଆଗେ ଆଗେ । ତାଙ୍କ ପଛେ ପଛେ ଇଷ୍ଟର୍ଣ୍ଣ ବ୍ଲକ୍ । କଳାଗୋରା ହଳଦିଆ ରଙ୍ଗ ନିର୍ବିଶେଷରେ, ସ୍ତ୍ରୀ ପୁରୁଷ ନିର୍ବିଶେଷରେ, ଜାତି ଧର୍ମ ନିର୍ବିଶେଷରେ ଧାଇଁବା ଆରମ୍ଭ କରିଦେଲେଣି ସମସ୍ତେ । ଅନୁରାଗ ବି ପ୍ରାଣମୂର୍ଚ୍ଛା ଧାଉଁଥାଏ । ସତେକି ଏକ ସତସତ ଅଲିମ୍ପିକ୍ ମାରାଥନ୍ ରେସ୍‌କୁ ବାହାରି ପଡ଼ିଲେଣି ସମସ୍ତେ ଏକାବେଳକେ । ସେତେବେଳକୁ ସମସ୍ତେ ଦେଖିସାରିଲେଣି ସେଇ ମର୍ମନ୍ତୁଦ ଦୃଶ୍ୟଟିକୁ । ଦୂର ଦିଗ୍‌ବଳୟରେ, କେଜାଣି କେତେ ଦୂରରେ, ପୁଣି କେତେ ଉଚ୍ଚ— ବୋଧହୁଏ କୋଡ଼ିଏ ହଜାର ଫୁଟ ଉଚ୍ଚ ସେଇ ଶୃଙ୍ଗଟାର ଶୀର୍ଷରୁ ସତରେ ଓହଳି ପଡ଼ିଥିବା ମହାଶୂନ୍ୟରେ ଝୁଲନ୍ତ, ଅସହାୟ ମାନବଶିଶୁକୁ ଆଉ ନ ଦେଖି ପାରିଥାନ୍ତା ଭଲା କେଉଁ ହୃଦୟବାନ ମଣିଷର ଆଖି ସେତେବେଳେ ?

ଝାଳ ନାଳ ହେଇ ଦଉଡୁଥାନ୍ତି ସମସ୍ତେ ସେଇ ଏକ ଲକ୍ଷ୍ୟରେ । ଝିଅମାନେ ବଡ଼ ପାଟି କରି କାନ୍ଦୁଥାନ୍ତି ମଧ୍ୟ । ଅନୁରାଗ ଶୁଣିପାରୁଥାଏ ସେଇ ପାଷାଣୀ ଖମାର୍ ମନସୁର୍‌ର ହେ ଆଲ୍ଲା, ହେ ଆଲ୍ଲା ପ୍ରାର୍ଥନା ସହିତ ମାତୃବତ୍ସଳତାର ଆର୍ତ୍ତ ଚିତ୍କାର ''ବଚାଓ ! ବଚାଓ ! ମେରା ବଚ୍ଚାକୁ କୋଇଭି ବଚାଲୋ ବଚାଲୋ— ଆରେ ଓ ତୋ ଗିର୍ ଯାଏଗା ଗିର୍‌ଯାଏଗା ! ବଚାଓ !''

ତା'ର ଆହ୍ୱାନ ଆହୁରି କରୁଣ କରିଦେଉଥାଏ ପରିସ୍ଥିତିକୁ ସେତେବେଳେ ଏତେ ମାନବୀୟ ଅସହାୟତାରେ ଯେ ଅନୁରାଗ ମଧ୍ୟ ଆରମ୍ଭ କରିଦେଲାଣି ପ୍ରାର୍ଥନା, ''ହେ ଜଗନ୍ନାଥ ! ହେ ମା ! ହେ ଶ୍ରୀ ଅରବିନ୍ଦ ! ହେ ରାମକୃଷ୍ଣ ! ହେ ବିବେକାନନ୍ଦ...''

ଏତିକିବେଳେ ପଛରୁ ଶୁଣାଗଲା ଡଃ. ଫ୍ରୟଡ୍‌ଙ୍କ ସ୍ୱର, ''ମତେ ଦିଶୁଚି ପିଲାଟାର ରଙ୍ଗ କଳା । ବୋଧହୁଏ ଏସିଆଟିକ୍ ପିଲାଟିଏ । ନା ନା, ଆଫ୍ରିକାନ୍ ପିଲାଟିଏ କି କ'ଣ !''

ଏତିକି ତାଙ୍କ ପାଟିରୁ ଶୁଣାଯିବା ମାତ୍ରେ ହଠାତ୍ ସବାଆଗରେ ଧାଉଁଥିବା ଥର୍, ବିଲ୍, ଡିକ୍, ଏସ୍କେଫ୍‌ଙ୍କ ଗୋଡ଼ଗୁଡ଼ାକ ଶିଥିଳ ହେଇଗଲା । ଏଥର ତାଙ୍କୁ ଟପି ଚାଲିଲେ ମାସାକୋ ମାମ୍ଧା, ମହମ୍ମଦ ବିରାଧୀ ବୀରବର ଓ ଅନ୍ୟମାନେ । ମାମ୍ଧା ଟାଙ୍ଗାନାୟିକାର ସ୍ପୋର୍ଟସ୍‌ମ୍ୟାନ୍ ଯେ କହେ ଏ ଉପତ୍ୟକାଟା ତାଙ୍କ ଦେଶର ଓ ଦିଗନ୍ତର ସେଇ ତୁଷାରାବୃତ୍ତ ପର୍ବତମାଳା ମାଉଣ୍ଟ୍ କିଲ୍‌ମାନ୍‌ଜାରୋ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । କିନ୍ତୁ ଇଣ୍ଡୋନେସିଆର ବିରାଧୀ ବୀରବର ଯେ ସତରେ ଗୋଟାଏ ରନର୍ ଏ ବିଶ୍ୱାସ ନ ଥିଲା ଅନୁରାଗର ।

ଗୋରାମାନେ ଆସ୍ତେ ଆସ୍ତେ ପଡ଼ିଗଲେ ପଛରେ । କଳା ଓ ଏସିଆଟିକ୍ ବାଦାମୀ ରଙ୍ଗର ରନର୍‌ମାନେ ପ୍ରାଣମୂର୍ଚ୍ଛା ଦଉଡୁଥାନ୍ତି ଆଗକୁ ଆଗକୁ ।

ସେତିକିବେଳେ ଡଃ. ଫ୍ରୟଡ୍ ପୁଣି ଚିତ୍କାର କରି ଉଠିଲେ, ''ନଟ୍ ବ୍ଲାକ୍, ନଟ୍ ବ୍ରାଉନ୍— ଆଫ୍ରିକାନ୍ ନୁହଁ କି ଏସିଆଟିକ୍ ବି ନୁହଁ— ଏ ଗ୍ରିନ୍ କଲରଡ୍ ଚାଇଲ୍ଡ ! ମତେ ସ୍ପଷ୍ଟ ଦିଶୁଚି । ଏଗ୍ରିନ୍ କଲରଡ୍ ଚାଇଲଡ୍, ଏଭଳି ସାବୁଜା ରଙ୍ଗର ମଣିଷ ପିଲା ତ କୋଉଠି ଦେଖିନି ମୁଁ । ହୁଏତ ମଙ୍ଗଳ ଗ୍ରହର ଜନ୍ତୁଟିଏ କି କଅଣ !''

ଧଡ଼୍‌କିନା ଅଟକିଗଲା ପାଦଗୁଡ଼ାକ । ଥକ୍କା ମରା ହେଇ ବସିପଡ଼ିଲେ ସମସ୍ତେ । କେହି କେହି ମାଟି ଉପରେ ଲୋଟିଗଲେ— ଘୋର କ୍ଳାନ୍ତି ଅନୁଭବ କରି ।

ପ୍ରାୟ ଅଧଘଣ୍ଟାଏ ପରେ ସମସ୍ତେ କ୍ଳାନ୍ତ ଅବସ୍ଥାରେ ଝୁଲି ଝୁଲି ଆସି ପହଞ୍ଚିଲେ ଡଃ. ଫ୍ରୟଡ୍‌ଙ୍କ ନିକଟରେ ।

''ଏହାରି ନାଁ ମାସ୍ ହିପ୍‌ନୋସିସ୍—'' ଏଥର ଯୋଗ ଥିଓରି ଉପରକୁ ଫେରିଆସିଲେ ଡଃ. ଫ୍ରୟଡ୍ । କହିଲେ, ''ଆମର ସମସ୍ତ ଆଚରଣ ପ୍ରାୟ ଏଇଭଳି ! ଆମେ ଯାହା ବୁଝିଥାଉ ତା' ବାହାରକୁ ଇଞ୍ଚେ ବି ଆମ ଚେତନାରେ ଆମେ ଆଗେଇ ଯାଉନା କି ପଛେଇ ଯାଉନା । ଏହାକୁ ଆମେ କହୁ ଆମର ଫେଥ୍, ଆମର ଧର୍ମ, ଆମ ମାନବିକତା । ଏସବୁ ସହିତ ଆମ କନ୍‌ସସ୍‌ନେସ୍‌ର ଏତେ ଟିକେ ବି ସମ୍ପର୍କ ନ ଥାଏ । ସେଥିରେ ମାନବିକତାର ସମ୍ପର୍କ ନ ଥାଏ । ପ୍ରେମ ବା ଲଭ୍ ନ ଥାଏ । ସେ ପିଲାଟିକୁ ପ୍ରକୃତରେ କେହି ଭଲ ପାଉଥିଲେ ବୋଲି ଏମିତି ପ୍ରାଣମୂର୍ଚ୍ଛା ଦଉଡୁ ନ ଥିଲେ । କେହି ଜଣେ ସଜେଷ୍ଟ୍ କରିଥିବାରୁ ହିପ୍‌ନୋଟାଇଜଡ୍ ହେଇ ଧାଉଁଥିଲ ତମେ ସମସ୍ତେ—ସତେକି ଅସମ୍ଭବକୁ

ସମ୍ଭବ କରିଦେଇ ପାରିବେ; ଏଇ ଅନ୍ଧବିଶ୍ବାସରେ । ସେ ପର୍ବତ ଏଠିକି କେତେ ଦୂର ? ନିଶ୍ଚୟ ପଚାଶ ମାଇଲ୍‌ରୁ କମ୍ ନୁହେଁ । ସେ ପର୍ବତଶୃଙ୍ଗର ଉଚ୍ଚତା କେତେ ? ନିଶ୍ଚୟ କୋଡ଼ିଏ ବାଇଶି ହଜାର ଫୁଟ୍ । ତମେମାନେ କ'ଣ ଜାଣି ନ ଥିଲ, ତମର ସାଧାରଣ ଜ୍ଞାନରେ ଯେ ସେତେ ଦୂରତାକୁ ଅତିକ୍ରମ କରି କୋଡ଼ିଏ ହଜାର ଫୁଟ ଉଚ୍ଚରୁ ଝୁଲୁଥିବା କୌଣସି ମଣିଷ ପିଲାକୁ କଦାପି ବଞ୍ଚାଇ ପାରି ନ ଥାନ୍ତ କେବେବି ? କିନ୍ତୁ ଧାଉଁଥିଲ । କୋଉ ବିଶ୍ବାସରେ ? ପ୍ରକୃତ ମାନବିକ କରୁଣାର ଆବେଗରେ ? ତେବେ ରହିଗଲ କାହିଁକି ? —କିଏ ଛନ୍ଦିଦେଲା ତମମାନଙ୍କ ପାଦକୁ ? ତା ନାଁ, ହଁ ତାରି ନାଁ— ଧର୍ମ, ଇତିହାସ, ନ୍ୟାସନାଲିଜିମ୍ । ଏମିତି ମାସ୍ ହିପ୍‌ନୋସିସ୍ ବା ମାସ୍ ହିଷ୍ଟିରିୟା ସୃଷ୍ଟି କରି ଆସିଛନ୍ତି ସେମାନେ ହଜାର ହଜାର ବର୍ଷ ଧରି । ପ୍ରକୃତ ମାନବିକ ପ୍ରେମ ସହଜ କଥା ନୁହେଁ । ପ୍ରେମ ଅଚେତନରୁ ସୃଷ୍ଟି ହୁଏନା । ହିପ୍‌ନୋସିସ୍ ବା ହିଷ୍ଟିରିୟା ସୃଷ୍ଟି କରେନା ଲଭ୍ । ସମ୍ପୂର୍ଣ୍ଣ ସଚେତନତା ଅର୍ଥାତ୍ 'କନ୍‌ସସ୍‌ନେସ୍ ଇନ୍ ଫୁଲ୍‌ବ୍ଲୁମ୍' ସୃଷ୍ଟି କରେ ଲଭ୍ । ଖୁବ୍ କମ୍ ଲୋକ ଗୁଳାରାସ୍ତା ଛାଡ଼ି ନୂଆରାସ୍ତା ନିଜେ ତିଆରି କରନ୍ତି ନିଜପାଇଁ 'ଲଭ୍'ପାଇଁ । ପୃଥିବୀର ଛ' ବିଲିୟନ ଲୋକ ଏଇ 'ଲଭ୍' ନାଁରେ ସେକ୍ସ ଓ ଭାୟୋଲେନ୍ସରେ ମାତିଛନ୍ତି ବର୍ତ୍ତମାନ ପାଗଳଙ୍କ ପରି । ଅବଶ୍ୟ, ମଝିରେ ମଝିରେ ଗୋଟିଏ ଗୋଟିଏ ବୁଦ୍ଧ କି ଯୀଶୁଖ୍ରୀଷ୍ଟ ଆସନ୍ତି— ଟ୍ରୁ ଲଭର୍‌ଙ୍କ ଅବତାର ପାଲଟି । ସେମାନେ ବିରଳ । ତାଙ୍କୁ ଅନୁସରଣ କରିବା ଅସମ୍ଭବ । ତେଣୁ ସେମାନେ ମଣିଷ ପାଇଁ ଆଦର୍ଶ—କେବଳ ଆଦର୍ଶ ମାତ୍ର । ବର୍ତ୍ତମାନ ଆମ ସମସ୍ୟା:— ଗୋଟିଏ ବୁଦ୍ଧ ବା ଗୋଟିଏ ଯୀଶୁ ନୁହେଁ; ପୃଥିବୀର ଆବଶ୍ୟକ କୋଟି କୋଟି ବୁଦ୍ଧ, କୋଟି କୋଟି ଯୀଶୁ । ପ୍ରତ୍ୟେକ ଅପୂର୍ଣ୍ଣ ମଣିଷକୁ ସମ୍ପୂର୍ଣ୍ଣ କରିବାକୁ ହିଁ ପଡ଼ିବ ଆମକୁ ।'' ଏକ ଲମ୍ବା କ୍ଲାସ୍‌ରୁମ୍ ବକ୍ତୃତା ଦେଇସାରି ଚୁପ୍ ହେଇ ବସିଲେ ଡଃ. ଫ୍ରୟଡ୍ । କାହିଁକି କେଜାଣି ଟିକେ ବିଷଣ୍ଣ ଦିଶୁଥାଏ ତାଙ୍କର ମୁହଁ ।

''ଏ କଥା କ'ଣ ସମ୍ଭବ ? ଆମେ ମ୍ୟାନୁଫାକ୍‌ଚର୍ କରିପାରିବୁ ମ୍ୟାନ୍‌କାଇଣ୍ଡ୍‌କୁ ପୁଣିଥରେ ନୂଆ କରି ?'' ଜର୍ମାନ୍ ଟୋକା ହର୍‌ମ୍ୟାନ୍ ଉଠେଇଲା ପ୍ରଶ୍ନଟା, ''ତେବେ ପ୍ରଫେସର୍ ଫ୍ରେଡ୍ରେରିକ୍ ନିତ୍‌ସେଙ୍କ ମୂଳ ଥିଓରି ତ ବିଲ୍‌କୁଲ ଠିକ୍ । ସୁପର୍‌ମ୍ୟାନ୍ ସମ୍ଭବ !'

''ସୁପରମ୍ୟାନ୍ ସୁପ୍ରାମେଣ୍ଟାଲ୍‌ମ୍ୟାନ୍ ନୁହେଁ ହର୍‌ମ୍ୟାନ୍ । ହିଟଲର୍ ସେଇ ଭୁଲ କଲେ । ସୁପରମ୍ୟାନ୍ ନ ହୋଇ ଅସୁର ପାଲଟିଗଲେ ।'' ଡଃ. ଫ୍ରୟଡ୍‌ଙ୍କ ମୁହଁର ଜ୍ୟୋତି ଆହୁରି ମଳିନ ପଡ଼ିଗଲାଣି ସେତେବେଳକୁ । ଦୀର୍ଘଶ୍ବାସ ଛାଡ଼ିଲେ ସେ ।

ହର୍‌ମ୍ୟାନ୍ ପୁଣି ଚଢ଼ଉ କଲା ତାଙ୍କ ଉପରେ, ''ହିଟ୍‌ଲର୍ ଅସୁର ବୋଲି କେମିତି କହୁଚନ୍ତି ଆପଣ ? ଯେଉଁ ପୃଥିବୀରେ ବା ବିଶ୍ୱରେ ଈଶ୍ୱର ନ ଥାନ୍ତି ସେଠି ମଣିଷ କ'ଣ କରିପାରେ ଆଉ ? ସେ ନିଶ୍ଚେ ଈଶ୍ୱରଙ୍କ ଶୂନ୍ୟସ୍ଥାନ ପୂରଣ କରିବ ନା ନାଇଁ ? ହିଟଲର୍ ଈଶ୍ୱରଙ୍କ ଶୂନ୍ୟସ୍ଥାନ ପୂରଣ କରିବାକୁ ଚାହିଁଥିଲେ କେବଳ । ସେଥିରେ ତାଙ୍କର ଭୁଲ କେଉଁଠି ?''

ଡଃ. ଫ୍ରୟଡ୍‌ଙ୍କ ଭ୍ରୂଦୁଇଟି କୁଞ୍ଚିତ ହୋଇ ଆସୁଥାଏ । ବିସ୍ମିତ ହେଲା ପରି ଚାହିଁଲେ ସେ ସେଇ ଜର୍ମାନ୍ ଯୁବକ ହର୍‌ମ୍ୟାନ୍‌ର ମୁହଁକୁ । ପଚାରିଲେ, ''ଈଶ୍ୱର ମୃତ ! ଏ ତଥ୍ୟ କିଏ ଦେଲା ହିଟଲର୍‌ଙ୍କୁ ତମ ଜର୍ମାନୀରେ ହର୍‌ମ୍ୟାନ୍ ?''

''ତାଙ୍କ ଗୁରୁ ଫ୍ରେଡ୍‌ରିକ୍ ନିତ୍‌ସେ—'' ହସିଲା ନାଇଁ ଆଦୌ ହର୍‌ମ୍ୟାନ୍ । ସତେବା ସେ ମଧ ପୂରା ବିଶ୍ୱାସ କରୁଥାଏ ନିତ୍‌ସେଙ୍କ ସେଇ ଦୁର୍ବୋଧ ବାକ୍ୟ ''ଗଡ୍ ଇଜ୍ ଡେଡ୍''ର ଆଭିଧାନିକ ଅର୍ଥକୁ ଯାହାକୁ ନେଇ ବର୍ତ୍ତମାନ ମଧ ଜର୍ମାନୀରେ ନବ-ନାଜିବାଦ ମୁଣ୍ଡ ଟେକିବାକୁ ଉଦ୍ୟତ ପୁଣିଥରେ ।

''ଗଡ୍ ଇଜ୍ ଡେଡ୍'ର ଅର୍ଥ 'ଗଡ୍ ଇଜ୍ ନଟ୍ ଡେଡ୍' '', ମୁହଁକୁ ତା'ପରେ ନିଜର ଘୂରାଇ ନେଲେ ଡଃ ଫ୍ରୟଡ୍ ହର୍‌ମ୍ୟାନ୍ ଉପରୁ । ଲିଭିଲା ପାଇପ୍‌ଟିକୁ ମୁହଁରେ ଗେଞ୍ଜିଦେଇ ଚୁପ୍‌ହେଇ ବସିଗଲେ ସେ ।

କେହି ବୁଝିପାରିଲେ ନାହିଁ ଫ୍ରୟଡ୍‌ଙ୍କ ସେଇ ଅଦ୍ଭୁତ ଲଜିକ୍‌କୁ ତା'ପରେ । ଈଶ୍ୱର ମୃତର ଅର୍ଥ ଈଶ୍ୱର ଅମୃତ ? ଏ କି ନୂଆ ଯୁକ୍ତି ଆରମ୍ଭ କଲେ ମନସ୍ତତ୍ତ୍ୱର ପ୍ରଫେସର୍ ଡଃ. ଫ୍ରୟଡ୍ ? ତେବେ କ'ଣ ଫ୍ରେଡ୍‌ରିକ୍ ନିତ୍‌ସେ ପ୍ରକୃତରେ କହନ୍ତି ଈଶ୍ୱର ଅମୃତ !! ଅଥଚ ତାଙ୍କ କଥା ତାଙ୍କ ତୁଣ୍ଡରୁ ବାହାରି ମଣିଷଙ୍କ କାନରେ ପହଞ୍ଚିଲାବେଳକୁ ଶୁଭୁଚି ପୂରା ଓଲଟା ଅର୍ଥାତ୍ ଈଶ୍ୱର ମୃତ ?

ସମସ୍ତେ ଧନ୍ଦି ହୋଇପଡ଼ିଲେ ସେଇ ଦ୍ୱନ୍ଦ୍ୱରେ । ନିତ୍‌ସେ କ'ଣ ପ୍ରକୃତରେ ସେଇଆ ହିଁ କହୁଥିଲେ ସେଦିନ ? ଯାହା ଥିଲା ଦୁର୍ବୋଧ କେବଳ ଯୁକ୍ତିଗତ ଦ୍ୱନ୍ଦ୍ୱ ଯୋଗୁଁ— ଲଜିକାଲ ଫାଲାସି ଯୋଗୁଁ ? ଚିନ୍ତାରେ ପଡ଼ିଗଲାଣି ସାରା କ୍ଲାସ୍ । ଆମେ କ'ଣ ଭୁଲ ବୁଝିଲୁ ନିଜ ଦୋଷରୁ ?

କିନ୍ତୁ ଅନୁରାଗର ଦ୍ୱନ୍ଦ୍ୱ ଥିଲା ଅଲଗା । ନିତ୍‌ସେ ପ୍ରକୃତରେ କ'ଣ ପ୍ରମାଣ କରୁଥିଲେ ଈଶ୍ୱରଙ୍କ ଅସ୍ତିତ୍ୱ ଅଥଚ ତାଙ୍କ ପୂର୍ବାଶ୍ରମର ଭୁଲ୍ ଯୁକ୍ତି ମୁଣ୍ଡରେ ସମସ୍ତଙ୍କର ବସା ବାନ୍ଧିଥିବା ଯୋଗୁ ସମସ୍ତେ ଶୁଣିଲେ ଠିକ୍ ଓଲଟା ? ଅନୁରାଗ କ'ଣ ତେବେ ଠିକ୍ ଶୁଣିଥିଲା ? ମନେ ପଡ଼ିଗଲା ତା'ର ସେତେବେଳର ସେଇ ଅଦ୍ଭୁତ ଅନୁଭବ ନିଜ ମେରୁଦଣ୍ଡରେ- ଡଃ ଆଇନ୍‌ଷ୍ଟାଇନ୍, ପ୍ରଫେସର ନିତ୍‌ସେଙ୍କ

ବକ୍ତୃତା ଶେଷରେ ସେ ଯେଉଁ ପ୍ରଶ୍ନଟି ପଚାରୁଥିଲେ ପ୍ରତ୍ୟେକେ 'ଦେଖିଲ ?' ଯାହାର ଧ୍ୱନି ବା ନାଦ ନିଜ ନାଭିବ୍ରହ୍ମରେ ଡ୍ରମ୍ ବାଜିଲା ଭଳି ଗୁମ୍‌ଗୁମ୍ କରି ଉଠିବାରୁ ଅନୁରାଗ ହୋଇପଡୁଥିଲା ଅସ୍ଥିର, ତେବେ ତା'ର ଅର୍ଥ କ'ଣ ଏଇ ? ଆଇନ୍‌ଷ୍ଟାଇନ୍ କହୁଥିଲେ ସେ ଈଶ୍ୱରଙ୍କୁ ଦେଖିସାରିଛନ୍ତି ଆଉ ନିତ୍‌ସେ ମଧ୍ୟ କହୁଥିଲେ ଏକେବାରେ ସେଇଆ, ''ଗଡ୍ ଇଜ୍ ନ'ଟ୍ ଡେଡ୍ ?''

ପଡ଼ିଗଲା ସାରା କ୍ଲାସ୍ ଗୋଲକ ଧନ୍ଦାରେ । କିନ୍ତୁ ଦୁଇଜଣ ମାତ୍ର ବର୍ତ୍ତିଯାଇଥିଲେ ସେଇ ଦ୍ୱନ୍ଦ୍ୱରୁ । ସେ ଦୁଇଜଣଙ୍କ ଭିତରୁ ଜଣେ ଥିଲା ଅନୁରାଗ । ଅନ୍ୟ ଜଣକ ବିଚିତ୍ର ଭାବେ ଥିଲା ପ୍ରାୟ ଅଜଣା ଅନୁରାଗର । ତା' ନାଁ ମିଃ ୟୁକାତାନ । ମେକ୍ସିକୋର ପିଲା ୟୁକାତାନ୍ ସେଇ ଯେ ଉଠିପଡ଼ିଲା ଡଃ. ଫ୍ରୟଡ୍‌ଙ୍କୁ ବିସ୍ମିତ କରିଦେଇ କହିଲା, ''ମୁଁ ବି ଶୁଣିଚି । ପ୍ରଫେସର୍ ନିତ୍‌ସେ କହିଲେ ସବାଶେଷରେ ସେଇ ଯୁକ୍ତିଟି ଯାହାର ଅର୍ଥ 'ନଥିଂ ଇଜ୍ ସମଥିଂ' ଅର୍ଥାତ୍ 'ଜିରୋ ହାଜ୍ ଏ ଭାଲ୍ୟୁ' ଅଥାତ୍ ଶୂନ୍‌ମାନେ ସମ୍ପୂର୍ଣ୍ଣ । ମୁଁ ସ୍ପଷ୍ଟ ଶୁଣିଛି । ବୁଝିପାରି ନ ଥିଲି ସେତେବେଳେ । ବର୍ତ୍ତମାନ ବୁଝୁଚି । ନିତ୍‌ସେ ନିହିଲିଷ୍ଟ୍ ନୁହନ୍ତି । ନେତିବାଦର ଠିକ୍ ଓଲଟା ତାଙ୍କ ମତ...''

''ଆଚ୍ଛା ! ସାବାସ୍ ମିଃ ୟୁକାତାନ...'' ଡଃ. ଫ୍ରୟଡ୍‌ଙ୍କ ମୁହଁର ପୂର୍ବ ଜ୍ୟୋତି ପୁନର୍ବାର ଫେରି ଆସିଥାଏ, ଭଟ୍ଟା ପରେ ପରେ ସମୁଦ୍ରରେ ପୁଣି ଜୁଆର ଉଠିଲାପରି ।

ତଥାପି ପୁଣିଥରେ ଏକ ଦୀର୍ଘଶ୍ୱାସ ଭିତରୁ ଖେଦୋକ୍ତି ପ୍ରକାଶ କଲେ ସେ, ''ମଣିଷର ଦୁର୍ଭାଗ୍ୟ ଏହି ଯେ ସେ ମୃତ୍ୟୁ ପରେ ସତ୍ୟର ସନ୍ଧାନ ପାଏ । ଜୀବନକାଳ ଭିତରେ ସେ ଅନ୍ଧପରି କେବଳ ଦରାଣ୍ଡି ହେଉଥାଏ । ସମ୍ପୂର୍ଣ୍ଣ ଜ୍ଞାନ ଲାଭପାଇଁ ଜୀବକୁ ବାରମ୍ବାର ମରିବାକୁ ହୁଏ । ବାରମ୍ବାର ଜନ୍ମିବାକୁ ହୁଏ । ଏ ଏକ ସାଂଘାତିକ ଅଭିଶାପ ମଣିଷ ପ୍ରତି । ବିବର୍ତ୍ତନର ଏକ ବିଚିତ୍ର ମାର୍ଗ ଏ— ପୁନରାବୃତ୍ତି । ଜନ୍ମମୃତ୍ୟୁର ଚକ୍ରରୁ ଉଦ୍ଧାର ପାଇବା କଷ୍ଟକର ।''

''ମଣିଷ ତେବେ ମୃତ୍ୟୁ ପରେ ୱିଜ୍‌ଡମ୍ ଅର୍ନ କରେ ବୋଲି କହୁଚନ୍ତି ଆପଣ ? ହ୍ୱାଇ ନଟ୍ ଇନ୍ ରିଏଲ୍ ଲାଇଫ୍ ?'' ହରମ୍ୟାନ୍ ପଚାରିଲା ମଞ୍ଜି କଥାଟି, ''ବଞ୍ଚିଥିବାବେଳେ ମଣିଷର ପୂର୍ଣ୍ଣ ଜ୍ଞାନ ଲାଭ ହୁଏନା କାହିଁକି ? ମୃତ୍ୟୁ ପରେ ଜ୍ଞାନ ଲାଭ ହୁଏ କିପରି ?''

''ମଣିଷର ପ୍ରତିବନ୍ଧକ ମ୍ୟାଟର୍ । ମ୍ୟାଟର୍ ମଣିଷକୁ ଅମର ହେବାକୁ ରାସ୍ତା ଛାଡ଼େନା । ମଣିଷ ବି ମ୍ୟାଟର୍‌କୁ କାନ୍ଧରେ ବସେଇ ଥେଇ ଥେଇ, ନାଚୁଥାଏ—କ୍ଷୁଦ୍ର ଜୀବନକାଳ ଭିତରେ । ମଣିଷ ପାଇଁ ମ୍ୟାଟର୍ ହିଁ ବାସ୍ତବ; ଅନ୍ୟ ସବୁ ଅବାସ୍ତବ ।''

ଏତିକି କହି ସାରା କ୍ଲାସ୍‌କୁ ଅନାଇଲେ ଡଃ. ଫ୍ରଏଡ୍ । ଓଠ କଡ଼ରେ ପାଇପ୍‌ଟା ଥରଥର ହଉଥାଏ ତାଙ୍କର, "ବୁଝିଲ ? ମୁଁ ଯାହା କହୁଚି ବୁଝୁଚ ? ନା ମୁଁ ମଧ୍ୟ ଅବୋଧ ତମ ଡଃ. ଆଇନ୍‌ଷ୍ଟାଇନ୍, ଫ୍ରେଡ଼େରିକ୍ ନିତ୍‌ସେଙ୍କ ପରି ?" ପଚାରିଲେ ସେ ସେମିତି— ଥର ଥର ପାଇପ୍‌ଟାକୁ ଓଠ କଣରେ ଚିପିଧରି ।

"ଆମେ ଏଣିକି ଆଉ କିଛି ବୁଝୁନୁ ସତରେ ପ୍ରଫେସର୍ ! ଆପଣ କୋଉ ଈଶ୍ୱରଙ୍କ କଥା କହୁଛନ୍ତି ? ଖ୍ରୀଷ୍ଟିୟାନ୍ ଗଡ୍ ? ହିନ୍ଦୁ ଗଡ୍ ? ନା ଆଲ୍ଲାଙ୍କ କଥା ପ୍ରଫେସର୍ ? ନୋ ବଡ଼ି କ୍ୟାନ୍ ସି ଆଲ୍ଲା... ତାଙ୍କୁ ଆଇନ୍‌ଷ୍ଟାଇନ୍ ଦେଖିଛନ୍ତି ବୋଲି କହୁଚନ୍ତି କିପରି ଆପଣ ? ଏ ଆମପାଇଁ ଘୋର ବ୍ଲାସ୍‌ଫେମି... ଘୋର ବ୍ଲାସ୍‌ଫେମି... ଆମେ ପ୍ରତିବାଦ କରୁଛୁ..." ପୁଣି ଥରେ ଖମାର୍ ମନ୍‌ସୁରର ସ୍ମୃତି ଉଚ୍ଚାଟିତ ହୋଇଉଠିଲା । ସେ ହିଷ୍ଟ୍ରିକ୍ ହୋଇପଡ଼ିଲା । ଠିଆ ହେଇପଡ଼ି ଚିତ୍କାର କଲା, "ମତେ ୱାପସ୍ କରିଦିଆଯାଉ ବର୍ତ୍ତମାନ ମୋର ପୂର୍ବ ଅବସ୍ଥାକୁ । ଆପଣଙ୍କର କୌଣସି ଅଧିକାର ନାହିଁ ମୋ ମାଇଣ୍ଡ୍ ଉପରେ ଏପରି ଅତ୍ୟାଚାର କରିବାକୁ ଥରକୁ ଥର । ଆପଣ ଏଠାରେ ଆମ ଉପରେ ଜବରଦସ୍ତି କରୁଚନ୍ତି— ରେପ୍ ରେପ୍ ରେପ୍...", ବାଉଳି ହୋଇଉଠିଲା ଝିଅଟି— ଅବିକଳ ପାଗଳଙ୍କ ପରି ।

ପରେ ପରେ ଡଃ. ଫ୍ରଏଡ୍ ଝିଅଟିକୁ ନିଜ ଟ୍ରିଟ୍‌ମେଣ୍ଟ୍‌ରେ ରଖିବାପାଇଁ ଅନ୍ୟ ସମସ୍ତଙ୍କୁ ଆଦେଶ ଦେଲେ, "ପ୍ଲିଜ୍ ଲିଭ୍ ହର୍ ଆଲୋନ୍ । ନିଜ ନିଜ କେଭ୍‌କୁ ଫେରିଯାଅ । ଯୋଗ ଅଭ୍ୟାସ ଚାଲୁ ରଖ । ଗ୍ରସ୍ ମ୍ୟାଟର୍ କେମିତି ରିଭୋଲ୍ଟ କରେ ଦେଖୁଛ ତ ? ଗ୍ରସ୍ ମ୍ୟାଟର୍‌କୁ ଆୟତ୍ତ ନ କରିବା ପର୍ଯ୍ୟନ୍ତ ସ୍ୱର୍ଗରେ ବି ଏଇ ପାଗଳାମି ଯିବ ନାଇଁ ମଣିଷ ଶରୀରରୁ । ସେ ଈଶ୍ୱରଙ୍କୁ ସ୍ୱଚକ୍ଷୁରେ ଦେଖି ମଧ ନ ଦେଖିବାର ଛଳନା କରୁଥିବ । ନିଜକୁ ନିଜେ ପ୍ରତାରିତ କରୁଥିବ ଇଟର୍ନାଲି— ଅନନ୍ତ କାଳ ପର୍ଯ୍ୟନ୍ତ..."

ଅନୁରାଗ ଫେରିଆସିଲା ନିଜ ଗୁମ୍ଫାକୁ । ଅନ୍ୟମାନେ ମଧ; ଖମାର୍ ମନ୍‌ସୁର ବ୍ୟତୀତ ।

## [ ଦଶ ]

"ହେ ମିଃ ଇଣ୍ଡିଆ !" ଗୁମ୍ଫା ବାହାରେ ପୁଣି ଶୁଣାଗଲା ଥରର ଡାକ । ରାତି ସେ ପର୍ଯ୍ୟନ୍ତ ପାହି ନ ଥାଏ । ଅନୁରାଗ ଧ୍ୟାନସ୍ଥ । କିନ୍ତୁ ସେ ଶୁଣିପାରୁଥାଏ । ତା'ଛଡ଼ା ଥରର ଡାକର ଉଦ୍ଦେଶ୍ୟ ମଧ ସ୍ପଷ୍ଟ 'ଦେଖି' ପାରୁଥାଏ ସେ ।

ଏଥର ଥର୍ ଆସି ନ ଥାଏ ତା' ପ୍ୟାଣ୍ଟ୍ ଖୋଜିବାକୁ ବଣ ଭିତରେ । ସେ ଆସିଥାଏ କୌଣସି ଏକ ଜରୁରୀ ଖବର ନେଇ । ଖବରଟା ମଧ୍ୟ ଅନ୍ୟ କାହା ସମ୍ପର୍କରେ ନୁହେଁ— ଖବରର କେନ୍ଦ୍ରବିନ୍ଦୁ ସେଇ ଅବାଧ୍ୟ ଫେମିନାଇନ୍ ସ୍ପିରିଟ୍ ମିସ୍ ଖମାର ନିଜେ ।

ପ୍ରାୟ ସମାଧିସ୍ଥ ଅବସ୍ଥାରେ ଥର୍ ମୁହଁରୁ ସେଇ ଦୁଃସମ୍ବାଦଟା ପାଇଲା ଅନୁରାଗ ।

ଗୁମ୍ଫା ଭିତରକୁ ପଶିଆସି ଥର୍ ଚୁପ୍‌ଚାପ୍ କରି କହିଲା ଅନୁରାଗ କାନରେ, ''ସେ ଝିଅଟି ବର୍ତ୍ତମାନ ପୂରା ପାଗଳ । ସୁଇସାଇଡ୍ କରିବାକୁ କାଲି ରାତିରେ ଲେକ୍‌କୁ ଡେଇଁପଡ଼ିଲା । ମୁଁ ସ୍ୱିମିଂ କରୁଥିଲି ସାରାରାତି । ହଠାତ୍ ଶୁଣିଲି ଶବ୍ଦ । ଉଠେଇଲି ପାଣିରୁ ତାକୁ । ଅବସ୍ଥା ସାଂଘାତିକ । କ'ଣ କରାଯାଇପାରେ ? ସେ ଅଚେତ ହେଇ ପଡ଼ିରହିଚି ଲେକ୍ କୂଳରେ । କୁଡ୍ ୟୁ ହେଲ୍ପ ?''

ଆଖି ଖୋଲିଲା ଅନୁରାଗ । ଦେଖିଲା— ପୂର୍ବଥର ପରି ଏଥର ବି ଥର୍ ସମ୍ପୂର୍ଣ୍ଣ ଉଲଗ୍ନ । ତା'ର ଲମ୍ବା ଲମ୍ବା ନାଲି ନାଲି ମୁଣ୍ଡବାଳ ଆଉ ଦାଢ଼ିରୁ ଝର ଝର ହେଇ ତଥାପି ଝରି ପଡୁଥାଏ ପାଣି ।

ଆଶ୍ଚର୍ଯ୍ୟ ହେଲା ଥର୍‌ର ସେ ରୂପକୁ ଦେଖିବା ମାତ୍ରେ ଅନୁରାଗ । ଦିଶୁଥାଏ ସେ ଯୀଶୁଖ୍ରୀଷ୍ଟଙ୍କ ପରି ! ନା, ବିଲ୍ ପରି ନୁହେଁ—ବିଲ୍‌ର ଚେହେରା କୃତ୍ରିମ । ତା'ର ବି ଲମ୍ବା ବାଳ, କୁଞ୍ଚ କୁଞ୍ଚ ଦାଢ଼ି । କିନ୍ତୁ ଥର୍ ବିଲ୍ ନୁହେଁ ।

ଗୁମ୍ଫା ଭିତରଟା ଝାପ୍ସା ଅନ୍ଧାର । ଆକାଶରେ ଜହ୍ନ ଅଛି ହୁଏତ । କିନ୍ତୁ ସେଇ ଝାପ୍ସା ଅନ୍ଧାରରେ ବି ଅନୁରାଗକୁ ସ୍ପଷ୍ଟ ଦିଶୁଥାଏ ଥର୍‌ର ମୁହଁ, ଆଖି, କପାଳର ରେଖାବଳୀ ସମେତ୍ ତା'ର ସମଗ୍ର ବ୍ୟକ୍ତିତ୍ୱ ବର୍ତ୍ତମାନ । କିନ୍ତୁ ସେଥିରେ ବିସ୍ମିତ ବା ଆଚମ୍ବିତ ହେବାର ନ ଥାଏ କିଛି । ବିସ୍ମୟର କାରଣ— ଡଃ. ଫ୍ରୟଡ୍ ମଧ୍ୟ ଶେଷପର୍ଯ୍ୟନ୍ତ ପାରିଲେ ନାହିଁ କାହିଁକି ? ସେଇ ଝିଅଟିର ମାନସିକ ବ୍ୟାଧିକୁ ଡଃ. ଫ୍ରୟଡ୍ ମଧ୍ୟ ଆୟତ୍ତ କରିପାରିଲେ ନାହିଁ ?

''ତାକୁ ତାଙ୍କ କ୍ୟାମ୍ପରେ ପହଞ୍ଚେଇବା ଦରକାର'', ଥର୍ ଆରମ୍ଭ କଲା ତା' ସମସ୍ୟା ସମ୍ପର୍କରେ, ''ମୁଁ ଆଦୌ ଯିବି ନାହିଁ ସେ ଅଞ୍ଚଳକୁ । ସେମାନେ ମତେ ଜୀବନରୁ ମାରିଦେବାକୁ ଅନେକ ବାର ଧମକ ଦେଇସାରିଛନ୍ତି...''

''କାହିଁକି ?'' ମୁହଁ ଖୋଲିବାକୁ ବାଧ୍ୟ ହେଲା ଅନୁରାଗ ।

''କାରଣ ଅନେକ । ମୂଳ କାରଣ— ବ୍ଲାକ୍ ମ୍ୟାଜିକ୍ !'' ଗୁମ୍ଫା ଭିତରଟା ଗୁମ୍‌ଗୁମ୍ ଶୁଣାଗଲା ଥର୍‌ର ମୁକ୍ତକଣ୍ଠରୁ ବାହାରୁଥିବା ସ୍ପଷ୍ଟ ଉଚ୍ଚାରଣ ଯୋଗୁଁ ।

ଚମକିପଡ଼ିଲା ନାହିଁ ଅନୁରାଗ । କିନ୍ତୁ ଆଶ୍ଚର୍ଯ୍ୟ ଲାଗିଲା ତାକୁ ଶବ୍ଦଟା ଶୁଣି । ବ୍ଲାକ୍ ମ୍ୟାଜିକ୍ ?

ଏହା ପରେ ଆହୁରି ସ୍ପଷ୍ଟ କରିଦେଲା ଥର୍, "ସମଗ୍ର ଓ୍ୱେଷ୍ଟର୍ଣ୍ଣ କ୍ୟାମ୍ପ ଥରହର ବର୍ତ୍ତମାନ । କେହି ଆଉ ଯୋଗ ପ୍ରାକ୍ଟିସ୍ ଅବସ୍ଥାରେ ନାହାନ୍ତି । ସମସ୍ତେ ଡିଷ୍ଟର୍ବଡ୍ । ଆଖି ବୁଜିବା ମାତ୍ରେ ପଡୁଚି ହାଡ଼, ପଚାମାଂସ, ରକ୍ତ ଆମ ଉପରେ । ତା'ଛଡ଼ା ଭୟଙ୍କର ର୍ୟାପିଂ ସାଉଣ୍ଡ୍ । ଧଡ୍‌ଧଡ୍ ଦୁମ୍‌ଦୁମ୍ । କେତେବେଳେ ପ୍ରଚଣ୍ଡ ବିସ୍ଫୋରଣ ଭଳି ଶବ୍ଦ ବି । କାନ ଫାଟିଯିବ ସେଥିରେ ମଣିଷର । ଧ୍ୟାନ କରିବ କିଏ ସେଭଳି ଅବସ୍ଥାରେ ? ମୁଁ ସେଥିପାଇଁ ସାରାରାତି ପହଁରୁଚି ଲେକ୍‌ରେ । ତା'ରି ଭିତରେ ଯୋଗ ସାଧନା କରୁଚି କିଛି କିଛି..."

"ଆଉ ଅନ୍ୟମାନେ ?" ଅନୁରାଗର କୌତୂହଳ ଧୀରେ ଧୀରେ ଜାଗ୍ରତ ହୋଇ ଉଠିଲାଣି ଅଦ୍ଭୁତ ବ୍ୟାପାରଟା ବିଷୟରେ । ପଚାରିଲା ସେ, "ବିଲ୍, ଡିକ୍ ? ଆଉ ଏସକପ୍, ହର୍ମାନ୍ ? ଏମାନେ କେଉଁଠି ?"

"ଗନ୍ ଟୁ ଦ ହିଲ୍‌ସ୍... ସେଇ ପାହାଡ଼ ଆଡ଼କୁ ପଳାଇଛନ୍ତି ସେମାନେ", ଥର୍ ହସିଲା ଟିକେ ଏତେବେଳକେ ।

"ପୁଣି ସେମାନେ ? ଆଫ୍ରିକାନ୍‌ମାନେ ? ମେକ୍ସିକାନ୍ ? ପେରୁର୍ ସେ ପିଲା ? ଝିଅମାନେ ତମର ?" ଅନୁରାଗ ବି ହସିବାକୁ ବାଧ୍ୟ ହେଲା ଚିତ୍ରଟା ଆଖି ଆଗକୁ ଆସିବା କ୍ଷଣି ।

"ସେମାନେ ମତେ ହିଁ ମତେଇଲେ । ମୁଁ ସେମାନଙ୍କ ଲିଡ଼ର୍‌ସିପ୍ ନେଇଯାଇଥିଲି ଇଷ୍ଟର୍ଣ୍ଣ କ୍ୟାମ୍ପକୁ । ସତର୍କ କରିଦେଇଥିଲି ବି ସେମାନଙ୍କୁ । କହିଥିଲି— ଯଦି ପୁଣି ଆଟାକ୍ କରନ୍ତି, ସେମାନେ ଆମ ପକ୍ଷକୁ ତାଙ୍କ ବ୍ଲାକ୍ ମ୍ୟାଜିକ୍ ପାଓ୍ୱାର୍‌ରେ, ତେବେ ଆମେ ଛାଡ଼ିବୁ ନାହିଁ । ଆମକୁ ଜଣା ବ୍ଲାକ୍ କ'ଣ ବ୍ଲାକେଷ୍ଟ, ଡାର୍କେଷ୍ଟ ମ୍ୟାଜିକ୍ । ଆମ ପକ୍ଷରେ ବର୍ତ୍ତମାନ ଚାରି ଚାରିଟା କଣ୍ଟିନେଣ୍ଟ—ସାରା ୟୁରୋପ, ଦୁଇଟାଯାକ ଆମେରିକା ଆଉ ଆଫ୍ରିକା । ହଁ ଅଷ୍ଟ୍ରେଲିଆ ମଧ୍ୟ । ମାନେ ପାଞ୍ଚ ପାଞ୍ଚଟା ମହାଦେଶ ଆମ ପକ୍ଷରେ । ସେମାନେ କେବଳ ଗୋଟିଏ— ଅର୍ଥାତ୍ ଏସିଆ । ପାରିବେ ନାହିଁ କଦାପି ଆମକୁ ବିଦ୍ୟା ବୁଦ୍ଧି ବା ବଳରେ । ଆମ ପାଖରେ ଅଛି ପ୍ରଚୁର ନ୍ୟୁକ୍ଲିୟାର୍ ବମ୍ବ, ଡେଡ୍‌ଲିଏଷ୍ଟ୍ ବ୍ଲାକ୍ ଫୋର୍ସ !" ଉତ୍ତେଜିତ ହୋଇ ପଡ଼ିଥାଏ ଖୁବ୍ ସେତେବେଳକୁ ଥର୍ । ତା'ର ଯୀଶୁଖ୍ରୀଷ୍ଟ ରୂପଟି ବର୍ତ୍ତମାନ ଦିଶିଲାଣି ବେଶ୍ ଭୟଙ୍କର ଅନୁରାଗର ଆଖିକୁ ।

"ତମେମାନେ କ'ଣ ତାଙ୍କୁ ଏଇ ଭାଷାରେ ଧମକ ଦେଲ ? କ'ଣ ହେଲା ତା' ଫଳ ?" ପଚାରିଲା ଅନୁରାଗ, "ଯୋଗ ପ୍ରାକ୍ଟିସ୍ କ'ଣ ଏମିତି ଚାଲିଚି ତେଣେ ତମ ଦୁଇ କ୍ୟାମ୍ପରେ ? ତମେ ତେବେ 'ଯମ୍' ଷ୍ଟେଜ୍‌ରେଇ ଅଟକିଚ ?

ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ? କଅଣ କରୁଚ ସେସବୁ ନେଇ ? ବ୍ଲାକ୍ ମ୍ୟାଜିକ୍‌ରେ ପଶିଗଲଣି ତେବେ ?''

''ଓଃ !'' ସଚେତ ହୋଇଉଠିଲା ଥର୍ ହଠାତ୍ ଅନୁରାଗ ମୁହଁରୁ ସେସବୁ ଶବ୍ଦଗୁଡ଼ାକ ମନ୍ତ୍ରପରି ତା' କାନରେ ପଡ଼ିଲାକ୍ଷଣି । ମୁଣ୍ଡବାଳରୁ ତଥାପି ଝରୁଥିବା ବିନ୍ଦୁବିନ୍ଦୁ ପାଣିକୁ ଦାଢ଼ି ଉପରୁ ପୋଛି ଦଉ ଦଉ କହିଲା ସେ, ''ମୁଁ ନିଶ୍ଚେ ଅହିଂସା ଓ ବ୍ରହ୍ମଚର୍ଯ୍ୟ ପ୍ରାକ୍ଟିସ୍ କରୁଛି ମିଃ ଇଣ୍ଡିଆ ! ତମେ ନିଶ୍ଚୟ ରାଜି ହେବ ଯଦି ମୁଁ କହେ— ମୁଁ ନନ୍‌ଭାୟୋଲେନ୍ସରେ ସିଦ୍ଧି ଲାଭ କରିସାରିଛି ଅନ୍ତତଃ ! ନଚେତ୍ ସେ ଭ୍ୟାମ୍ପ୍‌କୁ ଲେକ୍ ପାଣିରୁ ରାତି ଅଧରେ ମୁଁ ବା କାହିଁକି ଉଠେଇ ଆଣିବାକୁ ଯାଇଥାନ୍ତି ? ଏ ଲେକ୍‌ଟା କେତେ ଗଭୀର ଏଠି ଜାଣ ମିଃ ଇଣ୍ଡିଆ ! ମୁଁ ପଢ଼ିଚି ହିମାଳୟରେ କେବଳ ଏହିପରି ଗଭୀର ଲେକ୍‌ସବୁ ଅଛି ଯେଉଁଠି ଲେକ୍ ବଟମ୍ ଓ ଇଣ୍ଡିଆନ୍ ଓସେନ୍‌ର ଜଳ ପତ୍ତନ ଏକା । ୟେସ୍ । ଓସୋନୋଗ୍ରାଫିରେ ପଢ଼ିଚି ମୁଁ— ତମ ଇଣ୍ଡିଆନ୍ ସବ୍ କଣ୍ଟିନେଣ୍ଟ୍ ଜିଓଲଜିକାଲି ଆଦୌ ଏସିଆର ଅଂଶ ନୁହେଁ । ଇଣ୍ଡିଆନ୍ ଲ୍ୟାଣ୍ଡ୍‌ମାସ୍ ମାଇଗ୍ରେଟ୍ କରି ଆସିଛି ଆଣ୍ଟାର୍କଟିକାରୁ । ପ୍ରାୟ ବାର ହଜାର ମାଇଲ୍— ସାଉଥ୍‌ରୁ ସିଧା ନର୍ଥକୁ ଜର୍ଣ୍ଣି ! ବୁଝୁଚ ତା' ଅର୍ଥ ? ଇଣ୍ଡିଆ ଏସିଆ ନୁହେଁ । ହିମାଳୟାନ୍ ରେଞ୍ଜ୍‌ର ଫର୍ମେସନ୍ ଏକ ଶକ୍ତ ଧକ୍କାରୁ—ଅବିକଳ ଆଉଏକ ବିଗ୍‌ବ୍ୟାଙ୍ଗ୍ କହିପାର ତମେ ତାକୁ । ସେଇ ଧକ୍କାର ହିମାଳୟଙ୍କ ମୁଣ୍ଡଟେକି ଉଠିଲା— ହେଭେନ୍‌ଓ୍ୱାର୍ଡ୍‌ସ ! ସ୍ୱର୍ଗ କହୁଚ ତମେ ଯାହାକୁ । ହିମାଳୟଙ୍କର ମୁଣ୍ଡ ସ୍ୱର୍ଗରେ ଥାଇପାରେ; କିନ୍ତୁ ମଝିରେ ମଝିରେ ଭୟଙ୍କର ଗର୍ତ୍ତ । ଏଇ ଲେକ୍‌ଟି ସେଇଭଳି ଏକ ଡିପ୍ ଫିସର୍ । ୟା'ର ତଳ ଓ ଇଣ୍ଡିଆନ୍ ଓସେନ୍‌ର ଓ୍ୱାଟର୍ ଲେଭଲ୍ ପ୍ରାୟ ସମାନ । ଆଉ ଏଇ ରସାତଳକୁ ଡେଇଁ ପଶିଯିବାକୁ ବସିଥିଲା ତମରି ସବ୍‌କଣ୍ଟିନେଣ୍ଟ୍‌ର ତମ ପ୍ରେମିକା— ସୁଇସାଇଡ୍ କରିଦେବାକୁ ! ବଞ୍ଚାଇଦେଲି ମୁଁ । ୟାକୁ ତମେ ନନ୍‌ଭାୟୋଲେନ୍ସ ନ କହିବ ଯଦି ମୁଁ ନାଚାର !''

''ମୋ ପ୍ରେମିକା ?'' ହସିଉଠିଲା ଜୋର୍‌ରେ ଅନୁରାଗ ।

''ଓଃ ୟେସ୍ ! ତମେ ଦୁହେଁ ଏକା ସବ୍‌କଣ୍ଟିନେଣ୍ଟ୍‌ର ପରା ? ଏକ ଦେଶ, ଏକ କଲ୍‌ଚର, ଏକ ହିଷ୍ଟ୍ରି... ସବୁ ଏକ ତମର । ଅଥଚ ତମେ ଦୁହେଁ ଚିହ୍ନନା ପରସ୍ପରକୁ । ଏଇ କ'ଣ ତମ ଯୋଗ ସାଧନା ? ଅହିଂସା ? କମ୍ ଅନ୍ । ହେଲ୍ପ ହର୍ । ପଡ଼ିଚି ସେ ସେଠି ହ୍ରଦ କୂଳରେ ଅଚେତ ଅବସ୍ଥାରେ । ତାକୁ ନେଇ ତାଙ୍କ କ୍ୟାମ୍ପ୍‌ରେ ଛାଡ଼ିବା ଦାୟିତ୍ୱ ମୋର ନୁହେଁ, ତମର, ମିଃ ଇଣ୍ଡିଆ । ମୁଁ ମୋ କାମ କରିସାରିଛି । ଏଣିକି ତମ କାମ ତମେ କର । ମୁଁ ଚାଲିଲି ।''

ଉଠିପଡ଼ିଲା ଥର୍ ଖୁବ୍ ଜୋର୍‌ରେ । ଗୁମ୍ଫାର ଅନୁଚ୍ଚ ଛାତରେ ଡେଙ୍ଗା ଥର୍‌ର ମୁଣ୍ଡଟା ଢୁ କିନା ପିଟି ହେଇଗଲା । ସେ ପୁଣି ବସିପଡ଼ିଲା ଆଃ ବୋଲି କହି ।

ଅନେକ ସମୟ ପରେ ସୁସ୍ଥ ହେଲା ଥର୍ ।

ସୂର୍ଯ୍ୟ ଉଦୟ ହେଇ ଆସୁଥାନ୍ତି । ସିନ୍ଦୂରା ଫାଟିଗଲାଣି ବେଶ୍ ଆଗରୁ ।

ଥର୍‌ର ହାତ ଧରି ହ୍ରଦ କୂଳକୁ ଗଲା ଅନୁରାଗ । ଖମାର୍‌ର ଚେତା ଫେରି ସାରିଥାଏ ।

ଦୂରରୁ, ଗଛ ଆଢୁଆଳରୁ, ଅନୁରାଗ ଦେଖିଲା ସେଇ ବିସ୍ମୟକର ଦୃଶ୍ୟ । ବିଶ୍ୱାସ କରିପାରୁ ନ ଥାଏ ସେ ନିଜ ଆଖିକୁ ।

ଖମାର୍ ମନ୍‌ସୁର, ସେଇ ମୁସ୍‌ଲିମ୍ ଝିଅଟି, ବସିଥାଏ ପଦ୍ମାସନରେ । ପ୍ରଭାତ ସୂର୍ଯ୍ୟଙ୍କ ଲାଲ୍ ଏବଂ ନରମ କିରଣର ଚୁମ୍ବନରେ ଝିଅଟି ଦିଶୁଥାଏ ଅବିକଳ ଏକ ପଦ୍ମ ପରି । ସେ ପଦ୍ମର ନାଡ଼ ଲମ୍ବିଯାଇଥାଏ ହ୍ରଦର ଅତଳ ଜଳର ତଳ ପର୍ଯ୍ୟନ୍ତ ଯେଉଁଠି ଭାରତ ମହାସାଗରର ଜଳପତନ ରହିଛି ବୋଲି କହିଥାଏ ଥର୍— ଓସୋନୋଗ୍ରାଫିର ଛାତ୍ର, ଥର୍ ହେଡ୍‌ରଡାହଲ !

ସେଦିନ ଖମାର୍‌କୁ ତାଙ୍କ କ୍ୟାମ୍ପରେ ପହଞ୍ଚେଇ ଦେଇଥିଲା ଅନୁରାଗ । ଥର୍ ଗଲା ନାହିଁ । କହିଲା, ''ମୋ କାମ ମୁଁ କରିସାରିଛି— ଏଥର ତମ ବୋଝ ତମେ ବୁହ । ଚାଲିଲି ମୁଁ ।'' ପଳେଇଲା ଥର୍ ଅଧା ବାଟରୁ, ସେଇ ଗଛ ମୂଳୁ, ପଛୁଆ ପଛୁଆ ତା'ପରେ ।

## [ ଏଗାର ]

ପଦାର୍ଥର ରୂପାନ୍ତର ସତରେ ଘଟି ଚାଲିଥାଏ ଅନୁରାଗର ଚାରିପାଖେ । ପ୍ରଥମେ ପ୍ରଥମେ ଖୁବ୍ ଅସ୍ପଷ୍ଟ ମନେ ହେଉଥିଲା ସେସବୁ । ଏବେ କିନ୍ତୁ ଖୁବ୍ ସ୍ପଷ୍ଟ । ଦୀର୍ଘ ସମୟ ଧ୍ୟାନରେ ବସି, ଅର୍ନ୍ତତ୍ରାଟକ ପ୍ରାକ୍ଟିସ୍ କରିସାରି, ସେଦିନ ସକାଳ ବ୍ରାହ୍ମ ମୁହୂର୍ତ୍ତ ପରେ ପରେ ବାହାରି ଆସିଲା ସେ ତା' ଗୁମ୍ଫାରୁ । ପିନ୍ଧିଥାଏ ଛୋଟ ଗାମୁଛା ଭଳି କନା ଖଣ୍ଡେ । ବାକି ଦେହଟା ପାଇଁ ଆବରଣର ଆବଶ୍ୟକତା ନ ଥାଏ ଆଉ ତା'ର । ଏଇ କେତେ ମାସ ଭିତରେ ତା'ର ମୁଣ୍ଡବାଳ ଦାଢ଼ି ନଖ ସବୁ ବଢ଼ି ବଢ଼ି ବେଶ୍ ବଡ଼ ବଡ଼ ହେଇ ସାରିଥାଏ । ଆଉ କେତେ ଦିନ ଏମିତି ବଣମଣିଷଙ୍କ ପରି ବଣରେ ଫଳମୂଳ ଖାଇ ଗୁମ୍ଫାରେ ଘାସ ଶେଯରେ ଶୋଇବାକୁ ପଡ଼ିବ ତାକୁ ଏଇ ପ୍ରଶ୍ନଟା ଆଜି ତାକୁ ବେଶି

ଘାରୁଥାଏ । କିନ୍ତୁ ସେ ପ୍ରଶ୍ନର ଉତ୍ତର ନ ଥାଏ ତା' ହାତରେ । ଡଃ. ଫ୍ରୟଡ୍ ସ୍ପଷ୍ଟ କଥାରେ ଚେତେଇ ଦେଇସାରିଥାନ୍ତି, "ଯଦି ଏଥର ମଧ୍ୟ କୋର୍ସ କମ୍ପ୍ଲିଟ୍ ନ କର, ଫେଲ୍‌କର, ତେବେ ତମମାନଙ୍କୁ ଆର୍ଥ୍‌କୁ ଫେରିଯିବାକୁ ହିଁ ପଡ଼ିବ । ସେମାନେ ଅନ୍ୟ ବ୍ୟବସ୍ଥା କରୁଛନ୍ତି । ଟାଲେଣ୍ଟ ସର୍ଚ୍ଚ ଚାଲିଚି ଜୋର୍‌ସାର୍ ତେଣେ... ।"

ଜହ୍ନ ସେପର୍ଯ୍ୟନ୍ତ ବୁଡ଼ି ନ ଥାଏ । ପଶ୍ଚିମ ଦିଗ୍‌ବଳୟରେ ଦିଶୁଥାଏ ଜହ୍ନ— ଅଗାଧ ସମୁଦ୍ରରେ ଭାସି ଭାସି ଆସିଥିବା ଛୋଟ ବୋଇତଟିଏ କୂଳରୁ ଅଳ୍ପ ଦୂର ବ୍ୟବଧାନରେ ଥାଇ, ପଛର ଅସୀମ ଜଳରାଶିର ବ୍ୟାପ୍ତିକୁ ପାରି ହୋଇ ଏପର୍ଯ୍ୟନ୍ତ ଆସିପାରିଲା କିପରି, ସେଇ ବିସ୍ମୟକର ପଶ୍ଚାତ୍ ଦୃଷ୍ଟିରେ ସତେକି ନିଘା କରୁଥାଏ ସେ, ପଛକୁ ତା'ର । ଆକାଶର ରଙ୍ଗ ଖୁବ୍ ଗଭୀର ସମୁଦ୍ର ପରି ନୀଳ । ତା' ଉପରେ ବିନ୍ଦୁ ବିନ୍ଦୁ ଚନ୍ଦନ ଟିପ ପରି ଅସଂଖ୍ୟ ତାରା । ପୂର୍ବାକାଶରେ ଉଜ୍ଜ୍ୱଳ ମଣି ଭଳି ଝଲ୍‌ଝଲ୍ ହେଉଥାଏ ଶୁକ୍ରତାରା ।

ହଠାତ୍ ଆରମ୍ଭ ହେଇଗଲା ପୁଣି ସେଇ ଅନୁଭବ—ଅନୁରାଗର ମେରୁଦଣ୍ଡରେ । କିଏ ଯେମିତି ପଚାରିଲା ତାକୁ କାନ ପାଖରେ, "ଦେଖିଲୁ ?"

ପରେ ପରେ ଶାନ୍ତ ନୀରବ ଉପତ୍ୟକା ମୁଖରିତ ହୋଇ ଉଠିଲା ଏକ ବିଚିତ୍ର ଧ୍ୱନିରେ । କାନ ଡେରିଲା ସେ । କି ଧ୍ୱନି ଏ ? କେଉଁଠୁ ବାହାରୁଚି ଏ ଶବ୍ଦ ? କିଛି ସମୟ କାନେଇବା ପରେ ଧ୍ୱନିର ଉତ୍ସକୁ ସତେକି ଖୋଜି ପାଇପାରିଲା ସେ । ଖଣ୍ଡେ ବିରାଟକାୟ ପଥର, ଉପତ୍ୟକାର ସବୁଜ ନରମ ଗାଲିଚା ଭଳି ଘାସତଳ ମାଟି ଭିତରୁ, ଏକା ଏକା ମୁଣ୍ଡଟେକି ଠିଆ ହେଇଥାଏ ଅଳ୍ପ ଦୂରରେ— । ବହୁ ପ୍ରାଚୀନ ଯୁଗର ଗ୍ରାନାଇଟ୍ ଶିଳାଖଣ୍ଡେ । ଆଜିକୁ ଚାରିଶହ କୋଟି ବର୍ଷ ତଳେ ଯେତେବେଳେ ପୃଥିବୀ ଶୀତଳଉଥିଲା ନିଜର ମିଲିୟନ୍ ମିଲିୟନ୍ ଡିଗ୍ରୀ ସେଣ୍ଟିଗ୍ରେଡ୍‌ର ତାପମାତ୍ରାକୁ ଆଉ ଉତପ୍ତ କୋମଳତାକୁ ଧୀରେ ଧୀରେ ବଜ୍ର କଠିନ ଶୀତଳତା ଆଡ଼କୁ ନୁଆଁଇ ଆଣୁଥିଲା ସେତିକିବେଳେ ଭୂପୃଷ୍ଠରେ ଦଳଦଳ ପକ୍ଷୀପରି ଉଡ଼ି ଘୂରିପାରୁଥିଲେ ଭୂଧରମାନେ । କ୍ରମେ ସବୁ ପକ୍ଷୀ ଉଡ଼ିଯାଇ ବସିପଡ଼ିଲେ ଧାଡ଼ି ଧାଡ଼ି ହେଇ ନିଜର ମନ ମୁତାବକ ସ୍ଥାନମାନଙ୍କରେ । ସବୁରି ପଛରେ ସମ୍ଭବତଃ ରହିଯାଇଥିଲା ଏଇ ପକ୍ଷୀଟି ଏକାକୀ । ଆଉ ସେତିକିବେଳେ ସମ୍ପୂର୍ଣ୍ଣ ଜଡ଼ ପାଲଟିଗଲା ସବୁଆଡ଼, ଭୂପୃଷ୍ଠର । ଏଇ ଏକାକୀ ବସି ରହିଥିବା ଧ୍ୟାନୀ ପକ୍ଷୀଟି ମଧ୍ୟ ରହିଗଲା ବିରାଟ ଶିଳାଖଣ୍ଡ ପରି ଏଇଠି, ଏଇ ସ୍ଥାନରେ, ଉପତ୍ୟକାର ଠିକ୍ ମଝିରେ ।

ଅନୁରାଗ ସେଇ ଶିଳା ଖଣ୍ଡ ପାଖକୁ ଗଲା । କାନରେ ବାଜୁଥାଏ ପୂର୍ବର ସେଇ ବିଚିତ୍ର ଧ୍ୱନି । ଶିଳାଖଣ୍ଡ ଉପରକୁ ନଇଁପଡ଼ିଲା ସେ । ପଥର ଉପରେ

କାନ ଚାପିଲା । ବାସ୍ତବିକ ତା'ର ଅନୁମାନ ସତ୍ୟ । ସେଇ ଅଦ୍ଭୁତ ଧ୍ୱନିର ଉତ୍ସଟିକୁ ସେଦିନ ସକାଳେ ଠାବ କରିପାରି ଖୁବ୍ ବିସ୍ମିତ ହେଲା ସେ । ପଥର ଖଣ୍ଡଟା ସତେ ଯେପରି ଓଁକାର ଧ୍ୱନି ତୋଳି କୌଣସି ଜଣେ ପ୍ରାଚୀନ ଋଷି ପରି ପ୍ରଣବର ଉଚ୍ଚାଟକାରୀ ନାଦ ବିତରଣ କରୁଥାଏ ଚତୁର୍ଦ୍ଦିଗକୁ । ଅନାହତ ନାଦ ।

କିନ୍ତୁ ସେଥିରେ ଅନୁରାଗର ବିସ୍ମୟ ଆଉ ଦୀର୍ଘସ୍ଥାୟୀ ହୋଇପାରି ନ ଥିଲା । ତାର କାଣ୍ଡଜ୍ଞାନ ପୁଣିଥରେ ତାକୁ ଚେତେଇ ଦେଇଥିଲା—ପୃଥିବୀପୃଷ୍ଠର ସବୁ ବଡ଼ ଛୋଟ ଶିଳାଖଣ୍ଡ ଏପରିକି ଧାତୁନିର୍ମିତ ବସ୍ତୁରେ କାନ ଦେଇ ଶୁଣିଲେ ପିଲାଦିନେ ତ ଏଇ ଶବ୍ଦ ଏମିତି ଓଁ ଓଁ ଶବ୍ଦ ଶୁଣିପାରୁଥିଲା ସେ । ଏ ବିଶାଳ ପଥର ଖଣ୍ଡକ ଭିତରୁ ଓଁକାର ନାଦ ଶୁଣିବାରେ ବୈଚିତ୍ର୍ୟ ତେବେ କ'ଣ ? ମନକୁ ବୁଝାଇଦେଲା ସେ ।

ସୂର୍ଯ୍ୟ ଉଦୟ ହୋଇ ଆସୁଥାନ୍ତି । ଜହ୍ନ ବୁଡ଼ିଗଲାଣି । ପୂର୍ବ ଦିଗର ଉଦୟରାଗର ଶୋଭାକୁ ବହୁ ସମୟ ପର୍ଯ୍ୟନ୍ତ ଦେଖିସାରି ହ୍ରଦ କୂଳକୁ ଗଲା ସେ ନିତ୍ୟକର୍ମ ସାରି ଶୀଘ୍ର ଗୁମ୍ଫାକୁ ଫେରିଆସିବା ପାଇଁ । ଗାଧୋଇ ସାରି, ଓଦା ଗାମୁଛା ପିନ୍ଧି, ଝଟ୍‌ଝଟ୍ ଫେରି ଆସୁଥାଏ ସେ । ଆଜି ୟୁକାଟାନ୍, ସେଇ ମେକ୍ସିକୋ ଇଣ୍ଡିଆନ୍ ସାଧକଟି, ଆସିବାର ଥାଏ ତା ଗୁମ୍ଫାକୁ । ଖବର ପଠାଇ ନ ଥାଏ ସେ ଥର୍ ବା ବିଲ୍‌ଙ୍କ ହାତରେ । ଖବରଟା ଆସିଥାଏ ସିଧା ମସ୍ତିଷ୍କରୁ ମସ୍ତିଷ୍କ । ୟୁକାଟାନ୍‌ର ସ୍ୱର ସ୍ପଷ୍ଟ ଶୁଣିଥାଏ ସେ ଧ୍ୟାନରେ, "ଗୋଟିଏ କଥା ପଚାରିବାର ଅଛି ତମକୁ । ଆସିପାରେ ?" ସେଇ ଧ୍ୟାନରେ, "ହଁ" କହିଥିଲା ଅନୁରାଗ । କିନ୍ତୁ ସନ୍ଦେହ ମୁକ୍ତ ନ ଥିଲା ସେ— ନିଜର ଟେଲିପ୍ୟାଥିକ୍ କ୍ଷମତା ସଂପର୍କରେ । ତେଣୁ ଖୁବ୍ ବ୍ୟଗ୍ରତା ହଠାତ୍ ଅନୁଭବ କଲା ସେ । ତାକୁ ଲାଗିଲା ଯେମିତିକି ୟୁକାଟାନ୍ ଆସି ପହଞ୍ଚିଗଲାଣି ତା ଗୁମ୍ଫା ପାଖରେ । ଆଉ ଗୁମ୍ଫାରେ ସେ ନାହିଁ ଦେଖି କାଳେ ଖରାପ ଭାବିପାରେ, ଫେରିଯାଇପାରେ । ଏଇ ଆଶଙ୍କା ଜାଗ୍ରତ ହେଉଥାଏ ତା ମନରେ ।

ଖୁବ୍ ଲମ୍ବା ଲମ୍ବା ପାଦ ପକେଇ ଚାଲିଲା ଏଥର ଅନୁରାଗ ଘରମୁହାଁ । ଓଦା ଗାମୁଛା ଖଣ୍ଡକ ଫଡ଼୍‌ଫଡ଼୍ ଶବ୍ଦ କରୁଥାଏ ଜଙ୍ଘ ଚାରିପାଖେ ।

ଗୁମ୍ଫା ଦ୍ୱାରରେ ପହଞ୍ଚୁ ନ ପହଞ୍ଚୁଣୁ ଜାଣିପାରିଲା ସେ—କିଏ ଜଣେ ବସିଚି ଭିତରେ ! ୟୁକାଟାନ୍ ତା ହେଲେ ସତରେ ପହଞ୍ଚିଗଲାଣି କହୁ କହୁ ଏତେ ଶୀଘ୍ର ? ସେଇ ମେକ୍ସିକାନ୍ ପିଲାଟି ତାକୁ ସତରେ ଖୁବ୍ ଭଲ ଲାଗେ । ବହୁ ପ୍ରାଚୀନ ଭାରତୀୟ ସଭ୍ୟତାର ସମଗୋତ୍ରୀ 'ମୟ' ସଭ୍ୟତାର ସ୍ଥାନୀୟ ବାସିନ୍ଦା

ୟୁକାଟାନ୍ ତାକୁ ଦେଖିବା ମାତ୍ରେ କହେ, "ଜାଣ ମିଃ ଇଣ୍ଡିଆ ? ତମ ଆମ ଭିତରେ ବହୁତ ସାମଞ୍ଜସ୍ୟ । ତମେ ମୂର୍ତ୍ତିପୂଜା କର । ଆମେ ବି କରୁ । ଏବେ ବି ଆମେ ଆମ ଚର୍ଚ୍ଚରେ ମଦର ମେରୀଙ୍କ ମୂର୍ତ୍ତିକୁ ବସେଇ ଧୂପ ଦୀପ ଦେଇ ପୂଜାକରୁ । ସେ ମୂର୍ତ୍ତିଙ୍କ ନାଁ ମଦର୍ ଗ୍ୱାଡାଲୋପ । ଖୁବ୍ ପ୍ରତ୍ୟକ୍ଷ ଦେବୀ । ଡାକିଲେ ଓ କରନ୍ତି । ତାଙ୍କ ପାଖରେ ହଜାର ହଜାର ଭକ୍ତ ଅଧିଆ ପଡ଼ନ୍ତି । କଖାରୁ କାକୁଡ଼ି ବଳି ପକାନ୍ତି ବି । ଅନେକ ଆଚମ୍ବିତ ଘଟଣା ଘଟାନ୍ତି ଦେବୀ—ଆକାଶରେ ମଦରଙ୍କୁ ଉଡ଼ିବୁଲିବାର ଦେଖୁବି ଆମେ ଥରେ ଥରେ । ତାଙ୍କ ପାଖରେ ଖ୍ରୀଷ୍ଟମାସକୁ ମାନସିକ କରୁ ଆମେ । ଚର୍ଚ୍ଚର ଚଟାଣ ଓ ପାହାଚରେ ଚିତା ପକଉ । ମୁରୁଜ ପକଉ । ଆମେ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣ କରିବାକୁ ବାଧ ହେଲେ ମଧ ଏଯାକେ ଛାଡ଼ିନୁ ଆମର ପାରମ୍ପରିକ ମୂର୍ତ୍ତିପୂଜା । କିନ୍ତୁ ଏସବୁ ବାହାରିଆ ଜିନିଷ । ବଡ଼ କଥାଟା କ'ଣ ଜାଣ ? ତୁମର ଆମର ଅନ୍‌କନ୍‌ସସ ମାଇଣ୍ଡ୍ ପ୍ରାୟ ଏକା । ଆମେ ଆଖିବୁଜି ଧ୍ୟାନ କରିବା ମାତ୍ରେ କିଏ ସବୁ ଦିଶନ୍ତି କହିଲ ? ତମର ସହସ୍ରଭୁଜା ଦୁର୍ଗା, ଖଣ୍ଡାଖର୍ପରଧାରିଣୀ କାଳୀ ଆଉ ତାଣ୍ଡବ ନୃତ୍ୟ ଭଙ୍ଗୀରେ ଶିବ ! ଆହୁରି ଅନେକ । କିନ୍ତୁ ଏସବୁଠୁଁ ଆହୁରି ବଡ଼ ସଂପର୍କ ତମ ଆମର—ଆବ୍‌ଷ୍ଟ୍ରାକ୍ଟ କନ୍‌ସେପ୍ଟ 'ଜିରୋ' ବା ଶୂନ୍ୟ ସଂପର୍କରେ । ଆମେ 'ଜିରୋ'କୁ 'ଜିରୋ'ବୋଲି ଭାବୁନା । ଆମ ପାଇଁ 'ଜିରୋ'ର ଅର୍ଥ—'ଦ ରୁଟ୍ ଅଫ୍ ଦ ଥିଙ୍ଗ୍' ଅର୍ଥାତ୍ ଯେଉଁଥିରୁ ଅନ୍ୟସବୁର ସୃଷ୍ଟି...! ତମ ଇଣ୍ଡିଆରେ ବି ଜିରୋର ଅର୍ଥ ସେଇନା ?"

ୟୁକାଟାନ୍ ସାଙ୍ଗରେ ଆଲୋଚନା କରିବାକୁ ଭଲ ଲାଗେ ଅନୁରାଗକୁ । ତାକୁ ଲାଗେ ସତେ ଯେମିତି ଭାରତର ଏକ ଚେର ମାଟି ଫୁଟେଇ ପୃଥିବୀ ଆରପଟେ ଯାଇ ବାହାରିଚି ସେଠି—ସୁଦୂରର ମେକ୍ସିକୋରେ । ଖାଲି ମେକ୍ସିକୋ ନୁହେଁ—ଆଣ୍ଡିଜ୍ ପର୍ବତର ତଳେ ତଳେ ସାରା ପଶ୍ଚିମ ଉପକୂଳଟା ଦକ୍ଷିଣ ଆମେରିକାର, ଯୋଉଠି ଥିଲା 'ମୟ', 'ଆଜ୍‌ଟେକ୍' ଆଉ 'ଇନ୍‌କା' ନାମକ ତିନୋଟି ପ୍ରାଚୀନ ସଭ୍ୟତା । ସେଣ୍ଟ୍ରାଲ୍ ଆମେରିକାରୁ ଚିଲି, ପେରୁ ପର୍ଯ୍ୟନ୍ତ ! ବୋଧହୁଏ ସେଇ କାରଣରୁ ଆଜି ପର୍ଯ୍ୟନ୍ତ ସେଠାର ସ୍ଥାନୀୟ ବାସିନ୍ଦାଙ୍କୁ ଭାରତୀୟ ବା 'ଇଣ୍ଡିଆନ୍' ବୋଲି ଡାକନ୍ତି ଆମେରିକାନ୍ ଉପନିବେଶବାଦୀମାନେ ।

"ୟୁକାଟାନ୍ ! ତମେ ପହଞ୍ଚିଗଲଣି ଏତେ ଶୀଘ୍ର ? ତମେ ଟେଲିପ୍ୟାଥି କରୁଥିଲ ତାହେଲେ ମତେ ପରୀକ୍ଷା କରିବାକୁ ନା ? ଆଉ ମୋ ମେସେଜ୍ ପାଇଲ ତ ?" ଗୁମ୍ଫା ଭିତରକୁ ଖୁବ୍ ଖୁସିରେ ପଶିଯାଉଥିଲା ଅନୁରାଗ । ହଠାତ୍ ଛନ୍ଦୁରେଇ ହେଇଗଲା ପାଦ ଦୁଇଟା ତା'ର । କାନ୍ଥକୁ ଆଶ୍ରାକରି ଅଟକିଗଲା

ସେ । ନଇଁପଡ଼ି ଚାହିଁଲା ଭିତରକୁ । ଭୂତ ଦେଖିଲା ପରି ଥରହର କମ୍ପିଗଲା ସାରା ଦେହଟା ତା'ର । ଏ କିଏ ? ଏ ତ ୟୁକାଟାନ୍ ନୁହେଁ !

''କିଏ ? କିଏ ବସିଚ ମୋ ଗୁମ୍ଫାରେ ?'' ଜୋର୍‌ରେ ଡାକିଲା ଅନୁରାଗ । ସେ ଯାହା ଦେଖୁଥାଏ ସେତେବେଳେ, ସେଥିରେ ନିଜକୁ ନିଜେ ବି ବିଶ୍ୱାସ କରିବା ସମ୍ଭବ ହେଉ ନ ଥାଏ ତା ପକ୍ଷରେ ।

କୌଣସି ଜବାବ ମିଳିଲା ନାହିଁ ଯେତେଥର ପଚାରିଲେ ମଧ୍ୟ, ''କିଏ ତୁମେ ?'' ପ୍ରଶ୍ନର ।

ସେଇ ନିରୁତ୍ତରତା ଭିତରେ ଆବିଷ୍କାର କରିସାରିଥାଏ ସେ–ହିଂସା, ଘୃଣା, ଈର୍ଷା ଦ୍ୱେଷର ମୂର୍ତ୍ତିମନ୍ତ ଦେବୀ ସ୍ୱୟଂ ଆସି ଉପସ୍ଥିତ ତା'ର ଗୁମ୍ଫା ଭିତରେ ଓ ସେ ଦେବୀ ବସିଥାନ୍ତି ପଦ୍ମାସନରେ ମଧ୍ୟ, ତା'ର ଆସନ ଉପରେ, ଯାହା ଉପରେ ବସି ଅନୁରାଗ ସାଧନା କରେ ଯୋଗ, ନିୟମିତ ଭାବେ ପ୍ରତିଦିନ ।

ବହୁ ସମୟ ଗୁମ୍ଫା ବାହାରେ ଠିଆହେଇ ରହିଲା ଅନୁରାଗ । କ'ଣ କରାଯିବା ଉଚିତ ଏପରି ସମୟରେ, ଚିନ୍ତାକରି ପାରୁ ନ ଥାଏ ସେ ।

ପୁଣିଥରେ ବେକ ଗଳେଇ ଗୁମ୍ଫା ଭିତରକୁ ଦେଖିଲା ଅନୁରାଗ । ଦେବୀମୂର୍ତ୍ତି ସେମିତି ଆଖିବୁଜି ପଦ୍ମାସନରେ ଧ୍ୟାନରତା । କିନ୍ତୁ ଦୁଇ ଆଖିରୁ ଝରୁଥାଏ ଲୁହ ।

''ମିସ୍ ମନସୁର୍ ! ତମର ଦେହ ଆଉ ଖରାପ ହେଇନାହିଁ ତ ? ସବୁ ଠିକ୍ ତ ? ମୋ ପାଖରେ କିଛି କାମ ଅଛି ତମର ମିସ୍ ଖମାର୍ ?'' ଅନୁରାଗ ତଥାପି ଠିଆ ହେଇଥାଏ ବାହାରେ ।

''ମୁଁ ତମର ଅନୁମତି ନେଇ ଆସିଛି–ତମେ ମୋତେ ହଁ କରିବାରୁ ଆସିଥିଲି ।'' ଖମାର ପୁଣିଥରେ ତଟସ୍ଥ କରିଦେଲା ଅନୁରାଗକୁ ।

ଚିନ୍ତାରେ ପଡ଼ିଲା ଏଥର ଅନୁରାଗ । 'ହଁ' କରିଛି ସେ ? କେତେବେଳେ ? ତାକୁ ତ ଶୁଣାଗଲା ୟୁକାଟାନ୍‌ର ସ୍ୱର– ପଚାରିଲା ଟେଲିପ୍ୟାଥିରେ ''ଗୋଟାଏ କଥା ପଚାରିବାକୁ ଅଛି ତମକୁ । ଆସିପାରେ ?'' ଆଉ ତା'ର ପ୍ରତ୍ୟୁତ୍ତରରେ 'ହଁ' ଭରିଥିଲା ସେ ଧ୍ୟାନରେ ସେତେବେଳେ । ତା ମାନେ ସେ ସ୍ୱର ୟୁକାଟାନ୍‌ର ନୁହଁ ? ୟାର ? ଏଇ ବିପଜ୍ଜନକ ଝିଅଟିର ? ବିବ୍ରତ ହୋଇପଡ଼ିଲା ଅନୁରାଗ । 'ଥଟ୍‌ୱେଭ୍‌ସ୍'ରେ ମଧ୍ୟ ଅନୁପ୍ରବେଶ କରି ଶିଖିଗଲାଣି ଏ ଝିଅ ଖଣ୍ଡକ ଏତେ ଅଳ୍ପ ଦିନ ଭିତରେ ! ଅବାକ୍ ହେଲା ସେ । ଚୁପ୍‌ଚାପ୍ ସେମିତି ଓଦା ଗାମୁଛା ପିନ୍ଧି ଠିଆ ହେଇ ରହିଥାଏ ସେ ସେତେବେଳୁ ଏତେବେଳ ପର୍ଯ୍ୟନ୍ତ ଗୁମ୍ଫା ବାହାରେ ।

"ଭିତରକୁ ଆସ ପ୍ଲିଜ୍ । ମୁଁ ଆସିଚି ସତରେ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ନେଇ...", ଖମାରର ସ୍ୱରରେ ହାର୍ଦ୍ଦିକତା ଅନେକଟା ସାହସ ସଞ୍ଚାର କଲା ମନରେ ଅନୁରାଗର । କିନ୍ତୁ ଭିତରକୁ ପଶିବାକୁ ଗୋଡ଼ ଚାଲୁ ନ ଥାଏ ତାର । ସେତିକିବେଳେ କିଏ ଯେମିତି ତା ଭିତରେ ହସିଉଠି ଛିଗୁଲେଇବା ଭଳି କହିଲା, 'ତମେ ଭାଇ ଏଡ଼େ ମାଇଚିଆ !' ଚିହ୍ନିପାରିଲା ସେ ସ୍ୱରକୁ ଅନୁରାଗ । ତା ଭଉଣୀ ନୀଳିର ସ୍ୱର । ପରେ ପରେ ପୁଣି ଶୁଣାଗଲା ତାକୁ, 'ହଉ, ଆସୁ, ଆସୁ ସେ କୁକୁରୀ । ଦବ ଯେ ତମକୁ ଥଣ୍ଡାକରି..' । ମନେପଡ଼ିଗଲା ମଧ୍ୟ ସେଇ ଝିଅଟିର ମୁହଁ, ପ୍ରେଟି, ଯେ ଆସେ ମ୍ୟାଥ୍‌ମ୍ୟାଟିକ୍ସ ବୁଝିବାକୁ ତାଙ୍କ ଘରକୁ ନୀଳିମିଳିଙ୍କ ସାଙ୍ଗେ । ପୁଣି ବି ମନେପଡ଼ିଗଲା—ପ୍ରେଟିକୁ ମନ୍ତ୍ରୀ ପଶୁଶ୍ୱାନ ବାବୁଙ୍କ ପୁଅ ଗାଡ଼ିରେ ନେଇ ବୁଲେ । ଦିନେ ବି ପ୍ରେଟିକୁ ମନ୍ତ୍ରୀଙ୍କ ଘରୁ ବାହାର କରାଯାଇଥିଲା...ଆଉ ସେ ପ୍ରେଟି ଯେ ଚାରି ଚାରିଟା ସଂଖ୍ୟାକୁ ତଳ ଉପର କରି ରଖି ମୁହେଁ ମୁହେଁ ଗୁଣି ଦେଉଥିଲା ସେଇ ମ୍ୟାଥ୍‌ମ୍ୟାଟିକ୍ସ ଜିନିୟସ ଝିଅଟି ବର୍ତ୍ତମାନ ଗୀତ ଗାଉଚି କୋଉ ମେଲୋଡି ପାର୍ଟିରେ...ଆଉ ମଡେଲିଂ ବି କରୁଚି...ଆଉ ସେ ବର୍ତ୍ତମାନ ଦିଶୁଚି ଗୋଟାଏ ଧଳା ଆଲ୍‌ସିସିଆନ୍ କୁକୁର ପରି...

ଚମକି ପଡ଼ିଲା ଅନୁରାଗ । ଦିନେ ଥର୍ ବି ଏ ଝିଅଟିକୁ ରାଗରେ କହିଥିଲା—ଧଳା ଆଲ୍‌ସିସିଆନ୍ କୁକୁର ।

"କ୍ଷମା କରିବେ ମିଃ ଇଣ୍ଡିଆ...ଯଦି ଏଠାକୁ ଅନୁପ୍ରବେଶ କରିଥାଏ । ବିନାନୁମତିରେ ପଶିଆସିଛି ବୋଲି ଭାବୁଚନ୍ତି ଯଦି ଆପଣ, ତେବେ ମୁଁ ଚାଲିଯିବି । କିନ୍ତୁ ଗୋଟିଏ ପ୍ରଶ୍ନର ଉତ୍ତର ପାଇବି ବୋଲି ବହୁତ ଆଶା କରିଥିଲି । ଠିକ୍ ଅଛି । ଯାଏ ମୁଁ ତେବେ," ଖମାର୍ ମନ୍‌ସୁରର୍ ପଦ୍ମାସନରେ ଛନ୍ଦା ପାଦ ଦୁଇଟି ହୁଗୁଳି ଗଲାଣି ସେତେବେଳକୁ ।

"କି ପ୍ରଶ୍ନ ପଚାରିବେ, ପଚାରନ୍ତୁ ମିସ୍ ମନ୍‌ସୁର୍," ଗୁମ୍ଫା ବାହାରୁ ଶୁଣାଗଲା ଅନୁରାଗର କିଞ୍ଚିତ ଅନୁରାଗ ମିଶ୍ରିତ ସ୍ୱର ।

"ରୂପାନ୍ତରର ଅର୍ଥ କ'ଣ ? ଆପଣ କ'ଣ ସତେ ବିଶ୍ୱାସ କରୁଛନ୍ତି ଏଥିରେ ? ସଂପୂର୍ଣ୍ଣ ରୂପାନ୍ତର ସମ୍ଭବ ? ପ୍ରକୃତ ଅର୍ଥ ତା'ର କ'ଣ ?" ଖମାର ମଧ୍ୟ ବାହାରିଆସିଲାଣି ସେତେବେଳକୁ ଗୁମ୍ଫା ଭିତରୁ ପଦାକୁ ।

ସେତିକିବେଳେ ସତକୁ ସତ ଆସି ପହଞ୍ଚିଲା ଯୁକାଟାନ୍ । ଯୁକାଟାନ୍‌ର ଚେହେରା ଅନେକଟା ମିଶିଯାଏ ଇଣ୍ଡୋନେସିଆର ମହମ୍ମଦ ବିରାଧୀ ବୀରବରର ଚେହେରା ସାଥିରେ । କିନ୍ତୁ ସେ ମହମ୍ମଦ ବିରାଧୀ ବୀରବର ନୁହେଁ—ଯୁକାଟାନ୍ ।

## [ ବାର ]

ଖମାର ଶବ୍ଦର ଅର୍ଥ ଚନ୍ଦ୍ର– ପୂର୍ଣ୍ଣିମା ରାତ୍ରିର ଚନ୍ଦ୍ର । କିନ୍ତୁ ଯେଉଁଦିନ ପ୍ରଥମେ ଖମାର୍‌କୁ ଲାଉଞ୍ଜର ଖାଲି ସିଟ୍‌ରେ ତା ପାଖରେ ବସିବାକୁ ଅନୁରୋଧ କରିଥିଲା ଅନୁରାଗ ଓ ଶୁଣିଥିଲା–''ଓଃ ! ସରି...'', ପରେ ପରେ ଠକ୍‌ଠକ୍ ଜୋତା ହିଲ୍ ଶବ୍ଦ ନରମ ଗାଲିଚା ଉପରେ ମଧ, ସେଦିନୁ ଆଜିପର୍ଯ୍ୟନ୍ତ ଅନୁରାଗ ତାକୁ ଦେଖିଲେ ମନକୁ ତା'ର ଆସୁଥିଲା ଠିକ୍ ଅଲଗା ଏକ ଉପମା–କାମୁଡ଼ା ଆଲ୍‌ସିସିଆନ୍‌ର ଏକ ଜୀବନ୍ତ ଚିତ୍ର ।

କିନ୍ତୁ ବିଶ୍ୱର ସବୁ ସୁନ୍ଦର ଜିନିଷ ପଛରେ ଗୋଡ଼େଇ ଚାଲିଥାଏ ଶ୍ୱାନ ପରି ସେଇ ଛାଇଟା ଯାହା ପୂର୍ଣ୍ଣଚନ୍ଦ୍ରକୁ ମଧ କରିଦିଏ ରାହୁଗ୍ରସ୍ତ ଅସୁନ୍ଦର । ଅସୁନ୍ଦରକୁ ରାହୁମୁକ୍ତ କରେ ମଣିଷର ଯୋଗଚକ୍ଷୁ । ଯୋଗ ଚକ୍ଷୁ ବା ତୃତୀୟ ନୟନରେ ଦୃଶ୍ୟମାନ ବସ୍ତୁର ବାହ୍ୟରୂପ ନ ଥାଏ । ଥାଏ ଅର୍ନ୍ତରୂପ । ପ୍ରତ୍ୟେକ ବସ୍ତୁର ଅର୍ନ୍ତରୂପ କେବଳ ସୁନ୍ଦର ନୁହେଁ–ସ୍ୱର୍ଗୀୟ । ତାହାର ଅନ୍ୟନାମ ଦିବ୍ୟରୂପ ।

ବସ୍ତୁର ସ୍ଥୂଳ ରୂପ ଅତ୍ୟନ୍ତ କଠିନ ପାଷାଣ ଜଡ଼ ହୋଇପାରେ । କାରଣ ତାହାହିଁ ପଦାର୍ଥର ନିଜସ୍ୱ ପ୍ରକୃତି ବା ଧର୍ମ । କିନ୍ତୁ ବସ୍ତୁର ଅର୍ନ୍ତରୂପ ଜଡ଼ ନୁହେଁ; ତାହା ଚେତନାମୟ ! ଚୈତନ୍ୟ ଘଟିତ । ଏହି କାରଣରୁ ପଦାର୍ଥର ପରମାଣୁ ସଂପୂର୍ଣ୍ଣ ଜଡ଼ବତ୍ ଧର୍ମ ପ୍ରଦର୍ଶନ କଲେ ମଧ ତାହାର ସୂକ୍ଷ୍ମାତିସୂକ୍ଷ୍ମ ଭଗ୍ନାଂଶ 'ହାଡ୍ରନ୍' 'ମେଜନ୍' 'ବାରିୟନ୍' ବା 'କ୍ୱାର୍କ' ସ୍ତରରେ ସେସବୁ କଣିକା ଜଡ଼ ଭଳି ବ୍ୟବହାର ନ କରି ବ୍ୟବହାର କରନ୍ତି ଜୀବନ୍ତ ପରି ! ଚେତନଶୀଳ ସତ୍ତାପରି ।

ସମଗ୍ର ବିଶ୍ୱ ଚୈତନ୍ୟରୁ ହିଁ ଉଦ୍ଭୁତ । ଏହାର ପ୍ରତ୍ୟେକଟି ଅଂଶ ମଧ ଚୈତନ୍ୟମୟ । ଏହି ଉପଲବ୍ଧିର ଅନ୍ୟ ନାମ ବ୍ରହ୍ମୋପଲବ୍ଧି ।

ଖମାର୍ ସାଙ୍ଗରେ ଏଣିକି ଏହିପରି ଆଲୋଚନା ବେଶି ବେଶି ଚାଲିଲାଣି ଅନୁରାଗର । ଜଡ଼ର ରୂପାନ୍ତରକୁ ନେଇ ଏବେ କେବଳ ସେ ଦୁହେଁ ନୁହେଁ– ଆହୁରି ଅନେକ ଜଣ ମିଶିଲେଣି । ପ୍ରଥମେ ଆସିଲା ୟୁକାଟାନ୍ । ପରେ ପରେ ଥର୍, ବିଲ୍, ଡିକ୍, ଏସ୍‌କଫ୍ ମିଶିଲେ ଆଲୋଚନା ଚକ୍ରରେ । ଟିକିଏ ଡେରିରେ ଆସିଲେ ବାଙ୍ଗଲାଦେଶର ହନୀଫା, ଇରାନ୍‌ର ହାଇଫା, ବର୍ମାର ୟୁ, ଶ୍ରୀଲଙ୍କାର ସେନାନାୟକ, ଇଣ୍ଡୋନେସିଆର ମହମ୍ମଦ ବୀରାଧୀ ବୀରବର । ଚୀନ୍‌ର ଚାଓ ଓ ଜାପାନର ସୁଜୁକି ତେଣେ ଆଉ ଏକ ଆଲୋଚନା ଗୋଷ୍ଠି ସୃଷ୍ଟି କରିଥାନ୍ତି । ସେମାନେ ଖମାର୍‌କୁ ସନ୍ଦେହ କରୁଥାନ୍ତି । ତା'ର ସେଇ ପରିବର୍ତ୍ତନକୁ ସେମାନେ ତଥାପି ବିଶ୍ୱାସ କରୁ ନ ଥାନ୍ତି । ଭାବୁଥାନ୍ତି, ବୋଧହୁଏ 'ଖମାର୍' ଭଳି ଟାଣୁଆ

'ନେତ୍ରୀ'କୁ ଅନୁରାଗ ବଶୀଭୂତ କରିନେଇସାରିଛି ହିପ୍‌ନୋଟିଜିମ୍ ପାୱାର ପ୍ରୟୋଗ କରି । ତା ଛଡ଼ା ସେମାନେ ମଧ୍ୟ ଭାରତୀୟ ରହସ୍ୟବାଦ ଅପେକ୍ଷା ଚାଇନିଜ୍ ରହସ୍ୟବାଦ ବା 'ଟାଓଇଜମ୍'କୁ ଅଧିକ 'ଇଫେକ୍ଟିଭ୍' ବୋଲି ତଥାପି ମନେ କରୁଥାନ୍ତି ।

ସେ ଯାହାହେଉ—ସମୟ ଆସିଲା । ଡଃ ଫ୍ରୟଡ୍ ପ୍ରତ୍ୟେକଙ୍କୁ ବ୍ୟକ୍ତିଗତ ଭାବେ ପରୀକ୍ଷା କରିବାକୁ ଏକ ସମୟ ନିର୍ଦ୍ଦିଷ୍ଟ କରିଦେଲେ ।

ସେଦିନ ଥିଲା ଅନୁରାଗର ପରୀକ୍ଷା ଦିନ । ବ୍ରାହ୍ମମୁହୂର୍ତ୍ତରେ ଯୋଗାଭ୍ୟାସ ଶେଷକରି ଶୌଚ, ସ୍ନାନ ଇତ୍ୟାଦି ଶୀଘ୍ର ସାରିଦେବାକୁ ବାହାରି ପଡ଼ିଲା ଅନୁରାଗ, ସେମିତି ଗାମୁଛା ଖଣ୍ଡେ ପିନ୍ଧି ହ୍ରଦ ଆଡ଼କୁ । ସୂର୍ଯ୍ୟୋଦୟ ତଥାପି ବାକି । ହଠାତ୍ ପୁଣି ପ୍ରତିଧ୍ୱନିତ ହେଲା ସେଇ ଅନାହତ ଶବ୍ଦ । ଆଶ୍ଚର୍ଯ୍ୟ ହେବାର ନ ଥିଲା କିଛି ଆଜି ତା ପାଇଁ । ଚିହ୍ନି ସାରିଥାଏ ସେ ସେଇ ଶବ୍ଦକୁ—ଅନାହତ ନାଦ ଶୁଣିବା ତା ପାଇଁ ନୂଆ ନୁହେଁ ଆଜି । ଏ ନାଦର ଉଭୟ ଯୌଗିକ ଓ ବୈଜ୍ଞାନିକ ଅର୍ଥ ତା ପାଇଁ ଖୁବ୍ ସ୍ୱଷ୍ଟ ଓ ପ୍ରାଞ୍ଜଳ । ସେ ଜାଣେ, ଗଭୀର ଧ୍ୟାନମଗ୍ନତା ଯୋଗୁ କୁଣ୍ଡଳିନୀ ଶକ୍ତି ଅନାହତ ଚକ୍ର ଭେଦକଲେ ଏଇ ଧ୍ୱନି ବା ନାଦ ଶୁଣାଯାଏ ମଣିଷ କାନକୁ ଯାହା ସାଧାରଣ ମଣିଷ ପାଇଁ ଦୁର୍ଲଭ । କିନ୍ତୁ, କ୍ୟାମ୍ବ୍ରିଜ୍‌ର ଛାତ୍ର ଡିକ୍ କହେ—ଏ ଧ୍ୱନୀର ଉତ୍ପତ୍ତି ଆଜିକୁ ପ୍ରାୟ ହଜାରେ କୋଟି ବର୍ଷ ତଳେ ଘଟିଥିବା ବ୍ରହ୍ମ ବିସ୍ଫୋରଣ ବା ବିଗ୍‌ବ୍ୟାଙ୍ଗରୁ । ସମଗ୍ର ବିଶ୍ୱର ପଶ୍ଚାତ୍‌ପଟରେ ବିସ୍ଫୋରଣର ମୂଳ ଧ୍ୱନୀ ସମାନ ଭାବେ ସଚରାଚର ତରଙ୍ଗାୟିତ ହୋଇଚାଲିଛି ଅନବରତ । ଆଜିକୁ ହଜାର କୋଟି ବର୍ଷ ତଳର ବିଗ୍‌ବ୍ୟାଙ୍ଗର ପ୍ରମାଣ ବହନ କରୁଛି ଏଇ ନାଦ; ଯାହାକୁ ଫିଜିସିଷ୍ଟମାନେ କହୁଚନ୍ତି—ରେଡ଼ିଓ ୱେଭ୍‌ସ ବା ବେତାର ତରଙ୍ଗ । ପୁଣି ସବୁଠୁଁ ବିସ୍ମୟକର ଏହି ଯେ ଏଇ ବେତାର ତରଙ୍ଗର ବ୍ୟାପ୍ତି ବିଶ୍ୱର ପୃଷ୍ଠଭୂମିରେ ଏକବାରେ ସମାନ, ସିମେଟ୍ରିକାଲ୍ ! ପଦାର୍ଥ ବିଜ୍ଞାନରେ ସିମେଟ୍ରି କେବଳ ସମ୍ଭବ ସେଇଠି ଯେଉଁଠି ଅଛି ସଚେତନତା ବା 'କନ୍‌ସସ୍‌ନେସ୍' । ଏଇ ଦୃଷ୍ଟିରୁ ବିଗ୍‌ବ୍ୟାଙ୍ଗ୍ ଏକ ସଚେତନ ସ୍ରଷ୍ଟାର ଇଙ୍ଗିତ ବୋଲି ଅନେକ ପଦାର୍ଥ ବିଜ୍ଞାନୀ ସନ୍ଦେହ କରିଥାନ୍ତି ।

କିନ୍ତୁ ଅନୁରାଗର ବିସ୍ମୟ ଆଜି ବଳି ପଡ଼ିଲା ସେ ସମସ୍ତ ଶୁଣାକଥାକୁ ।

ହ୍ରଦରେ ଗାଧୋଇ ସାରି ତରବର ହେଇ ଫେରି ଆସୁଥାଏ ନିଜ ଗୁମ୍ଫାକୁ । ଡକ୍ଟର ଫ୍ରୟଡ୍ ସମୟ ଦେଇଥାନ୍ତି—ସକାଳ ଆଠକୁ ।

ସୂର୍ଯ୍ୟୋଦୟ ସେଇମାତ୍ର ଆରମ୍ଭ ହେଉଥାଏ । ହ୍ରଦକୂଳ ବଣ ଭିତରେ ଚଳକୁ ମୁହଁ ପୋତି ଧାଇଁଥାଏ ସେ । ହଠାତ୍ ତା ଆଖି ପଡ଼ିଗଲା– ଗଛମୂଳେ ଝଡ଼ି ପଡ଼ିଚି କେତୋଟି ଦିବ୍ୟସୁନ୍ଦର ପାଚିଲା ଫଳ । ଆଃ, କି ଲୋଭନୀୟ । ନଇଁପଡ଼ିଲା ଅନୁରାଗ । ମାଟି ଉପରୁ ପାଚିଲା ଫଳଟିଏ ଗୋଟେଇ ନେଇ ତାକୁ ପ୍ରଥମେ ଆଘ୍ରାଣ କରିବା ମାତ୍ରେ ହଠାତ୍ ଯେମିତି ତାକୁ କିଏ ବାରଣ କଲା । ସ୍ପଷ୍ଟ ସ୍ୱରଟିଏ ମଧ୍ୟ ଶୁଣାଗଲା, ''ବତ୍ସ ! ଏ ବୃକ୍ଷର ଫଳାହାର କରିବା ପୂର୍ବରୁ ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅ । ନଚେତ୍ ଫଳରେ ଅଧିକାର ନାହିଁ ତୁମର ! ଏହା ତୁମପାଇଁ ବିଷ ସଦୃଶ ହେବ ।''

ଚମକି ପଡ଼ିଲା ଅନୁରାଗ । ଉପରକୁ ଚାହିଁ ଦେଖିଲା–ସେଇ ଗଛ ଡାଳ, ଯେଉଁଠି ଦିନେ ଥରର ଟ୍ରାଉଜର୍ ସାପ ପରି ଝୁଲୁଥିଲା ଓ ଦୁଇ ମୁହଁରେ ଭୟଙ୍କର ଶବ୍ଦ କରୁଥିଲା–ସୁସୁ !

ପ୍ରଶ୍ନଟା କେଉଁଠୁ ଆସିଥିଲା ଜାଣି ନ ପାରି ଅନୁରାଗ ଏପାଖ ସେପାଖ ଅନୁସନ୍ଧାନ କରୁକରୁ ପୁଣି ଶୁଣିଲା,

''ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତ ଦ୍ରବ ସଂଯୁତମ୍ ।

ଏହାର ପର ପଦଟି ପୂରଣ କର । ନଚେତ୍ ତୁମ ହାତର ବିଷଫଳ ତୁମର ମୃତ୍ୟୁର କାରଣ ହେବ ।''

ହତ୍‌ବଦ୍ଭେଇ ଗଲା ଅନୁରାଗ । ଛୋଟ ପିଲାଦିନେ ଏହିପରି ପଦାବଳୀ ତା'ର ମା' କୌଣସି ବହିରୁ ବଡ଼ପାଟି କରି ପଢ଼ିବାର ମନେ ପଡୁଥାଏ ତାର । ପ୍ରତିଥର ବାପାଙ୍କଠାରୁ ସାଂଘାତିକ ମାଡ଼ ଖାଇ ଆହତ ହେଲାପରେ ମା ବହୁତ ସମୟ ଧରି ଧକେଇ ଧକେଇ କାନ୍ଦନ୍ତି । ପରେ ପରେ ସେ ଯାଇ ବସନ୍ତି ଠାକୁର ଘରେ । କିଛି ସମୟ ପରେ ତାଙ୍କର କାନ୍ଦୁରା ସ୍ୱରରୁ ଶୁଣାଯାଏ ଗୀତ । ଗୀତଟି ସଂସ୍କୃତରେ ନୁହେଁ; ଓଡ଼ିଆରେ । କିନ୍ତୁ ସେଇ ପିଲାଦିନେ ବି ଅନୁରାଗ ବୁଝିପାରିଥିଲା ଗୀତଟିର ଅର୍ଥ ଯାହା ଅନେକଟା ମିଶିଯାଉଛି ବର୍ତ୍ତମାନ ଏଇ ଅଦ୍ଭୁତ ଅଦୃଶ୍ୟ ସ୍ୱରରୁ ଶୁଣାଯାଉଥିବା ଭାଷା ସହିତ । ତେଣୁ ଅନୁରାଗର ଛାତିରେ ଟିକେ ଦମ୍ଭ ପଶିଗଲା । ସେ ପଚାରିଲା ସେଇ ଅଦୃଶ୍ୟ ପ୍ରଶ୍ନକର୍ତ୍ତାଙ୍କୁ ।

''ମୁଁ ଏହାର ପଦ ପୂରଣ କରିବି ମୋ ମାତୃଭାଷା ଓଡ଼ିଆରେ । ଅନୁମତି ଦିଅନ୍ତୁ ମହାଶୟ !''

''ଠିକ୍ ଅଛି, ଉଭୟ ପଦର ତର୍ଜମା କରିପାର ତୁମେ ତୁମର ମାତୃଭାଷାରେ'', ଆସିଲା ପୁଣି ସେଇ ଅଦୃଶ୍ୟ ଉତ୍ସରୁ ନିର୍ଦ୍ଦେଶ ।

ସାମାନ୍ୟ ଧ୍ୟାନସ୍ଥ ହେବା ମାତ୍ରେ ମା'ଙ୍କର ସେଇ ସଙ୍ଗୀତଟି ପୂରାପୂରି ସ୍ମୃତିରେ ଜାଗରୂକ ହୋଇଉଠିଲା ଅନୁରାଗର । କେବଳ ଭାଷା ନୁହେଁ । ସ୍ୱର ମଧ୍ୟ ।

ହୃଷ୍ଟ ଚିତ୍ତରେ ସ୍ୱର ଦେଇ ଆବୃତ୍ତି କଲା ସେଇ ପଦ କେତୋଟିକୁ ଅନୁରାଗ—

''ସକଳ ବେଦ ହୋଇ ବୃକ୍ଷେ
ଫଳ ଫଳିଲେ ଅନ୍ତରୀକ୍ଷେ
କେତେହେଁ ଦିନେ ପାଚି ତଳେ
ବୃକ୍ଷୁ ପଡ଼ିଲେ ବାୟୁବଳେ
ଶୁକ ଧାଇଁଲେ ତାହା ଦେଖି
ପକ୍ଷୀଙ୍କ ସଙ୍ଗତ ଉପେକ୍ଷି''

''ଧନ୍ୟ ଧନ୍ୟ ବତ୍ସ ! ଆହୁରି ଆଗକୁ ଆବୃତ୍ତି କର !'' ଏଥର ସ୍ୱରଟିର ଉତ୍ସ ପ୍ରାୟ ଠାବ କରିପାରିଲା ଅନୁରାଗ । ବୋଲିଲା ସେ ଉତ୍ସାହିତ ହୋଇ,

''ତୋଷେ ଅଧର କ୍ଷତ କଲା
ଭିତର ସୁରଙ୍ଗ ଦିଶିଲା
ତହୁଁ ଗଳିଲା ରସସାର
କି ଅବା ଦେବା ପଟାନ୍ତର
ଅମୃତ ନିନ୍ଦେ ସ୍ୱାଦୁ ପଣେ
ସୁଜନେ ପିବ ଅନୁକ୍ଷଣେ ।''

''ସାଧୁ ସାଧୁ ବତ୍ସ ! ସାଧୁ ସାଧୁ ! ଏଥର ତୁମେ ମୋର ଏଇ ଅମୃତ ଫଳଟିକୁ ଭକ୍ଷଣ କରିପାର । ତୁମେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛ'', ଗଛ ଆଢୁଆଳରୁ ଆତ୍ମପ୍ରକାଶ କଲେ ଡଃ ପ୍ରୟତ୍ ସ୍ୱୟଂ ।

''ସାର୍ ! ଆପଣ ଏଠାରେ ଏପରି ?'' ନତଜାନୁ ହୋଇ ବସିପଡ଼ିଲା ମାଟି ଉପରେ ଅନୁରାଗ ।

ଅନୁରାଗକୁ ତଳୁ ଉଠେଇ ନେଲେ ଡଃ ପ୍ରୟତ୍ । ତାକୁ ଆଲିଙ୍ଗନ କରି ପଚାରିଲେ, ''ଏ ସ୍ଥାନଟିର ନାମ କ'ଣ ଜାଣ ?''

''ନା ସାର୍'', ବିନୀତ କଣ୍ଠରେ ନିଜର ଅଜ୍ଞତା ପ୍ରକାଶ କଲା ଅନୁରାଗ ।

ଦରହସିତ କଣ୍ଠରେ ଡଃ ପ୍ରୟତ୍ ସଂକ୍ଷିପ୍ତ ଉତ୍ତରଟିଏ ଦେଲେ, ''ନୈମିଷାରଣ୍ୟର ନାଁ ଶୁଣିଛ ? ଏ ସେହି ନୈମିଷାରଣ୍ୟ ।''

''ନୈମିଷାରଣ୍ୟ'' ! ଅନୁରାଗର ସ୍ମୃତିପଟଳ ତଥାପି ସଂପୂର୍ଣ୍ଣ ଉନ୍ମୁକ୍ତ ହୋଇପାରି ନାହିଁର ପ୍ରମାଣ ହାତେ ହାତେ ଧରେଇ ଦେଲା ସେ ଡଃ ପ୍ରୟତ୍‌ଙ୍କୁ ।

"ଅଜ୍ଞତା ପାଇଁ ଲଜ୍ଜିତ ହେବାର କାରଣ ନାହିଁ," କାନ୍ଧ ଥାପୁଡ଼େଇ ଦେଲେ ଡଃ ଫ୍ରୟଡ୍ ଆଶ୍ୱାସନା ଦେବାକୁ । କହିଲେ, "ତୁମର ପ୍ରାରମ୍ଭିକ ଶିକ୍ଷା ଏଇ ତ ସଇଲା । ଏହାପରେ ତମେ ଯିବ ମେନ୍ ଏକାଡେମିକ୍ ବିଲ୍ଡିଂକୁ । ସେଠାରେ ବହୁ ବହୁ ଆଧୁନିକ ଜ୍ଞାନ, ସର୍ବାଧୁନିକ ଜ୍ଞାନ ପାଇଁ ଆହୁରି ତିନିବର୍ଷର ଟ୍ରେନିଂ । ସବୁ ଜାଣିପାରିବ । ସବୁ ବୁଝିପାରିବ । ବ୍ୟସ୍ତ ହୁଅନା ।"

"ଆମେ ଟ୍ରେନିଂ ସାରିଲେ ଘରକୁ ଫେରିଯିବୁ ? କ'ଣ କରିବୁ ସେଠି ଆମେ ? ପୃଥିବୀଟା ତ ଗୋଟେ ନରକ । ପୁଣି ସେଇ ନରକ କୁଣ୍ଡକୁ...", ଅନୁରାଗ ସତେକି ଟେଷ୍ଟ୍ କରୁଥାଏ ଗୁରୁଙ୍କୁ ।

"ନରକକୁ ସ୍ୱର୍ଗ କରିବାର ସଂକଳ୍ପ ନେଇଛ ତୁମେ ବତ୍ସ ! ଫେରିଯିବାକୁଇ ପଡ଼ିବ ସେଇ ନରକକୁ ତମମାନଙ୍କୁ ପୁନର୍ବାର ।" ଧୀରେ ଧୀରେ ଏକ ଅଦ୍ଭୁତ ରୂପାନ୍ତର ଘଟୁଥାଏ ଡଃ ଫ୍ରୟଡ୍‌ଙ୍କର ।

ସମ୍ମୁଖରେ ତା'ର ଏକ ଦିବ୍ୟପୁରୁଷ ! ଜ୍ୟୋତିର ତରଙ୍ଗରେ ଉଦ୍ଭାସିତ ହୋଇ ଉଠୁଥାନ୍ତି ସେ । ଆଖି ଝଲସି ଗଲା ଅନୁରାଗର । ସେ ଆଉ କିଛି ଦେଖି ପାରୁ ନ ଥାଏ । କିନ୍ତୁ ତା'ର ସ୍ମୃତିରେ ଉଦ୍ଭାସିତ ହୋଇ ଉଠୁଥିବା ରୂପଟିକୁ ସେ ସ୍ପଷ୍ଟ ଦେଖିପାରୁଥାଏ । ଖଣ୍ଡିଏ ଧୋତି କୁଞ୍ଚକୁ କାନ୍ଧରେ ବେଢ଼େଇ ଠିଆ ହେଇଥାନ୍ତି ସେ ଅବିକଳ ସେମିତି ଯେମିତି ଦେଖିଥିଲା ସେ ତାଙ୍କୁ ସେଇ ଫଟୋଗ୍ରାଫ୍‌ରେ, ଯାହାକୁ ବାୟା, ପାଗଳା, ଡ୍ରଗ୍ଆଡିକ୍ଟ କହି ଲୁହାଛଡ଼ରେ ବାଡ଼େଇ ଭାଙ୍ଗି ରାସ୍ତାକୁ ଫୋପାଡ଼ି ଦେଇଥିଲେ ବାପା ତା'ର ସେଦିନ ।

ସେ ରୂପର ପୁଣି ଘଟିଲା ରୂପାନ୍ତର । ଦିବ୍ୟ ପୁରୁଷଙ୍କ ସ୍ଥାନରେ ଠିଆ ହୋଇଥାନ୍ତି ଡଃ ଫ୍ରୟଡ୍ । ପଚାରିଲେ ହସିଦେଇ–"ଦେଖିଲୁ ?"

ଛାତିଫାଟି ଗଲା ଭଳି ଅନୁଭବ କଲା ଅନୁରାଗ । ଆନନ୍ଦର ଲହଡ଼ିମାଳା ଉବୁକି ଉଠୁଥାଏ ତା'ର ସୁଷୁମ୍ନା କାଣ୍ଡ ମଧ୍ୟରେ ସହସ୍ରାର ପର୍ଯ୍ୟନ୍ତ ।

"ଆପଣ ତେବେ ମହାଯୋଗୀ ଶ୍ରୀ ଅରବିନ୍ଦ ?" ସଂଶୟ ନୁହେଁ; ଧ୍ରୁବ ବିଶ୍ୱାସର ଉପସଂହାର ଅନୁରାଗର କଣ୍ଠରେ, "ଆଉ ମାଡାମ୍ କ୍ୟୁରି ମଧ୍ୟ ମାଡାମ୍ କ୍ୟୁରି ନୁହନ୍ତି ତେବେ ? ଶ୍ରୀମା ! ଦ ଡିଭାଇନ୍ ମଦର୍ ?"

"ଆମକୁ ଚିହ୍ନିବା ପୂର୍ବରୁ ପ୍ରଥମେ ଏହି ମହର୍ଷି ବର୍ଗଙ୍କୁ ଚିହ୍ନିନିଅ ବତ୍ସ !" ଡଃ ଫ୍ରୟଡ୍‌ଙ୍କ କର ପ୍ରସାରିତ ହୋଇ ଲାଗିଥାଏ ଗୋଟାକ ପରେ ଗୋଟାଏ ଗୋଟାକ ପରେ ଗୋଟାଏ କରି ଉପତ୍ୟକାର ପ୍ରତ୍ୟେକଟି ଛୋଟବଡ଼ ବୃକ୍ଷଲତା ଗୁଳ୍ମ ତୃଣ ପର୍ଯ୍ୟନ୍ତ ।

"କିଏ ଏମାନେ ?" ନିର୍ବୋଧ ଶିଶୁଟି ପରି ବଡ଼ ବଡ଼ ଆଖି ଦୁଇଟିକୁ ତା'ର ଘୂରେଇ ଲାଗିଲା ଅନୁରାଗ । ଯୋଡ଼ାଏ ଉଜ୍ଜ୍ୱଳ ସର୍ଚ୍ଚ ଲାଇଟ୍‌କୁ ଏକକାଳୀନ ଫୋକସ୍ କଲାପରି ସେ ଫୋକସ୍ କରୁଥାଏ ତାର ଜାଗ୍ରତ ଅନ୍ତର୍ଜଗତ ଉପରେ ମଧ୍ୟ ନିଜର ବାହ୍ୟଚକ୍ଷୁକୁ ।

"ହେଇ ଏ ! ଯାହାଙ୍କ ଫଳ ହାତରେ ଧରିଛ । ସେ ସ୍ୱୟଂ ମହର୍ଷି ବ୍ୟାସଦେବ । ଆଉ ଏ ହେଲେ ତାଙ୍କର ପ୍ରିୟ ପୁତ୍ର ଶୁକଦେବ । ଏ ହେଲେ ସୂତମୁନି । ପୁଣି ଏ ଶୌନକ ମହର୍ଷି । ଏମାନେ ଆଜିକୁ ଚାରିହଜାରରୁ ଅଧିକ ବର୍ଷ ତଳେ ଏଇ ନୈମିଷାରଣ୍ୟରେ ଏକତ୍ରିତ ହୋଇଥିଲେ—ମୃତ୍ୟୁଭୟରୁ ମାନବ ଜାତିକୁ ଉଦ୍ଧାର କରିବାର ସଂକଳ୍ପ ନେଇ । ପାଇଥିଲେ ମହାମନ୍ତ୍ର 'କୃଷ୍ଣ' ନାମ ମଧ୍ୟ । ମଣିଷର ମନରେ ପ୍ରଗାଢ଼ ଆଶା ଜାଗ୍ରତ କରିଥିଲେ ଏମାନେ ଦିନେ ଓ ପ୍ରମାଣ କରିଥିଲେ ଯେ ମୃତ୍ୟୁ ଏକ ଛାର ଦୁଃସ୍ୱପ୍ନ ମାତ୍ର । କିନ୍ତୁ ତାହା ସ୍ଥାୟୀ ହୋଇପାରିଲା ନାହିଁ । କଳିଯୁଗରେ ମୃତ୍ୟୁ ଆହୁରି ବଳଶାଳୀ ହୋଇଉଠିଲା..." ଡଃ ଫ୍ରୟଡ୍‌ଙ୍କ ପ୍ରସାରିତ ହାତର ଅଙ୍ଗୁଳି ସ୍ଥିର ହୋଇରହିଲା ଅରଣ୍ୟର ଅନ୍ୟ ଏକ ଅଂଶ ଉପରେ ।

"ସେ ବୃକ୍ଷଗୁଡ଼ିକ କ'ଣ ଏ ନୈମିଷାରଣ୍ୟର ଅଂଶ ମଧ୍ୟ ?" ଅନୁରାଗର ଆଖି ଘୂରି ଆସିଲା ଡଃ ଫ୍ରୟଡ୍‌ଙ୍କ ମୁହଁ ଉପରକୁ ।

"ୟେସ୍ ଡିଅର୍ ! ଦେ ଠୁ ! ସେମାନେ ମଧ୍ୟ ! ଏ ବିଶ୍ୱର ପରମ ବନ୍ଦନୀୟ ମହର୍ଷିଗଣ ! ବାଇବେଲ୍ ବର୍ଣ୍ଣିତ ସମସ୍ତ ସନ୍ଥଗଣ ମୋଜେସ୍, ଜ୍ୟାକବ୍, ଜୋସେଫ୍, ପିଟର୍... ସେଣ୍ଟଫ୍ରାନ୍‌ସିସି ଅଫ୍ ଆସିସି ମଧ୍ୟ..." ଡଃ ଫ୍ରୟଡ୍ ଏକ ଲମ୍ବା ନାମାବଳୀ ସହିତ ଅରଣ୍ୟର ସେଇ ଅଂଶଟିକୁ ନିର୍ଦ୍ଦେଶ କରୁଥାନ୍ତି ।

ବିସ୍ମିତ ହେଲା ଅନୁରାଗ । ସନ୍ଦେହ ତଥାପି ଉଙ୍କି ମାରୁଥାଏ ତାର ସ୍ଥାନ କାଳ ପାତ୍ର ପରି ଐତିହାସିକ ସ୍ମୃତିଯୋଗୁ । ପଚାରିଲା ସେ—"ଆଉ ଇସ୍‌ଲାମିକ୍ ସନ୍ଥଗଣ ?" ଅନୁରାଗର ଚେତନାରେ ପ୍ରତିଫଳିତ ହେବାକୁ ଆରମ୍ଭ କଲା ସେଇ ଦୁଃଖିନୀ କନ୍ୟା ଖମାର୍ ମନ୍‌ସୁର୍‌ର ଶୁଖିଲା ମୁହଁଟି ସେତିକିବେଳେ ।

ଡଃ ଫ୍ରୟଡ୍ ଗୋଟିଏ ସନ୍ଧାନୀ ଦୃଷ୍ଟିରେ ଖୋଜିନେଲେ ପ୍ରଥମେ ଅନୁରାଗର ମୁହଁରେ ପ୍ରତିଫଳିତ ହେଉଥିବା ଭାବତରଙ୍ଗଗୁଡ଼ିକର ଭାବାର୍ଥକୁ । ପରେ ପରେ ପୁନର୍ବାର ପ୍ରସାରିତ ହେଲା ତାଙ୍କର ଦୀର୍ଘ ବଳିଷ୍ଠ ବାହୁ ଉପତ୍ୟକାର ଅନ୍ୟ ଏକ ପ୍ରାନ୍ତକୁ ।

"ଏଇ ଦେଖ ! ସେଠାରେ, ସେ ଯେଉଁ ବିଶାଳ ଶିଳାଖଣ୍ଡ ଭୂଗର୍ଭରୁ ମଥା ଟେକି ଅନାଇ ରହିଛି ଏ ସମଗ୍ର ଉପତ୍ୟକାଟିକୁ ତାହାହିଁ ଥିଲା ହୋଲି କୋରାନ୍

ଓ ହୋଲି ବାଇବେଲ୍ ବର୍ଣ୍ଣିତ ପ୍ରଥମ ମାନବ ଆଦାମଙ୍କର ଆସନ । ଏଇ ଶିଳା ଉପରେ ଆନମନା ହେଇ ବସିଥିବା ସମୟରେ ଆଲ୍ଲା ବା ଗଡ୍ ସେଇ ଆଦିମାନବ ଆଦାମ୍‌ଙ୍କୁ ଦର୍ଶନ ଦେଇଥିଲେ ଆଜିକୁ ଦଶହଜାର ବର୍ଷତଳେ । ସେହିଠାରେ ମଧ୍ୟ ସୃଷ୍ଟିକର୍ତ୍ତା 'ଖଲିକ୍' ସୃଷ୍ଟିପାଳକ 'ରବ୍' ଓ ସୃଷ୍ଟି ସଂହାରକ 'ଜବ୍ବର'— ତାଙ୍କୁ ତୁମେ କହିପାର ମଧ୍ୟ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ସେମାନେ ଦର୍ଶନ ଦେଇଥିଲେ ଆଦିମାନବ ଆଦାମ୍‌ଙ୍କୁ । ପରେ ପରେ ଆସିଲେ ଅନେଶୋତ ଜଣ 'ଗଞ୍ଜୁଲ୍ ଆର୍ଶ' ଆଲ୍ଲାଙ୍କର ଅନେଶୋତ ନାମର ପ୍ରତୀକ ସ୍ୱରୂପ । ଏହାପରେ ପ୍ରଫେଟ୍ ଓ ପୈଗମ୍ବରଗଣ । କିନ୍ତୁ ସେମାନେ ବୃକ୍ଷରୂପ ଧାରଣ କରି ଏ ଉପତ୍ୟକାରେ ଅବସ୍ଥାନ କରିବାକୁ ଇଚ୍ଛୁକ ନୁହନ୍ତି । ତେଣୁ ରହିଯାଇଛି ପ୍ରଥମ ମାନବ ଆଦାମଙ୍କର ସେଇ ସିଂହାସନଟି କେବଳ ଖୋଲା ମଇଦାନର ମଧ୍ୟସ୍ଥଳରେ ।'' ଅଟକିଗଲେ ଡଃ ଫ୍ରୟଡ୍ ।

''ସାର୍ ! ମୁଁ ଦିନେ ବ୍ରାହ୍ମମୁହୂର୍ତ୍ତରେ ସେଇ ବିଶାଳ ଶିଳାଖଣ୍ଡର ଅନ୍ତଃସ୍ଥଳରୁ ଶୁଣିଛି—ଅନାହତ ନାଦ । ବିଶ୍ୱାସ କରନ୍ତୁ ସାର୍...'', ଭାବାବେଗରେ ଅସ୍ଥିର ହେଉଥାଏ ଅନୁରାଗ ।

''ଠିକ୍ ଅଛି । ଠିକ୍ ଅଛି । ଏଣିକି ତୁମେ ସ୍ୱାଧୀନ ଭାବେ ଆବିଷ୍କାର କର ଏଇ ବିଶାଳ ଉପତ୍ୟକାର ଅନ୍ୟସବୁ ଅନାବିଷ୍କୃତ ଅଞ୍ଚଳକୁ । ବହୁବହୁ ଗ୍ରେଟ୍ ସୋଲ୍‌ଙ୍କର ଉପସ୍ଥିତି ତୁମେ ଏଠାରେ ନିଶ୍ଚେ ଅନୁଭବ କରିପାରିବ । କିନ୍ତୁ ମନେରଖ ବତ୍ସ, ଏ ତୁମର ସେଇ ଥ୍ରିଡାଇମେନ୍‌ସାଲ୍ ମ୍ୟାଟର୍‌ରେ ଗଢ଼ା ପୃଥିବୀର ଅଂଶବିଶେଷ ନୁହେଁ ଆଦୌ । ଏହା 'ମଲ୍‌ଟି ଡାଇମେନ୍‌ସନାଲ୍ ମ୍ୟାଟର୍'ରେ ନିର୍ମିତ ଏକ ବିଶେଷ ପରୀକ୍ଷା ସ୍ଥଳ ଯେଉଁଠି ପଦାର୍ଥର ରୂପାନ୍ତର ପାଇଁ ଆରମ୍ଭ କରାଯାଇଛି ସର୍ବାଧୁନିକ ବ୍ୟବସ୍ଥା । ଉଭୟ ଯୋଗ ଓ ଆଧୁନିକ ବିଜ୍ଞାନର ମିଳିତ ପ୍ରୟୋଗରେ ପ୍ରଥମେ ଇଭଲ୍ୟୁସନ୍‌ର ସଂଗୁପ୍ତ ଶକ୍ତିକୁ ଆବିଷ୍କାର କରାଯିବ ଏହି ମନୋବିଜ୍ଞାନର ଲାବରେଟୋରିରେ..'', କୌତୂହଳୀ ଆଉ କୌତୁକପୂର୍ଣ୍ଣ ଏକ ଅଦ୍ଭୁତ ଚାହାଣିରେ ଡଃ ଫ୍ରୟଡ୍ ଅନାଇଲେ ଅନୁରାଗର ମୁହଁକୁ । ଅନୁରାଗର ସମଗ୍ର ଶରୀର ପୁନର୍ବାର ଥରିବାକୁ ଲାଗିଲା । ତାକୁ ଜଣାଗଲା ଡଃ ଫ୍ରୟଡ୍ ସତେ ବା ତା ମୁଣ୍ଡ ଭିତରକୁ ଗୋଟାଏ ମୁନିଆଁ ଛୁଞ୍ଚ ଭର୍ତ୍ତିକରି ଦେଇସାରିଲେଣି ସେତେବେଳକୁ ।

ଡକ୍ଟର ଫ୍ରୟଡ୍‌ଙ୍କ ବ୍ୟାଖ୍ୟା ତଥାପି ସଂପୂର୍ଣ୍ଣ ହୋଇ ନ ଥାଏ । କହୁଥାନ୍ତି ସେ, ''ଇଭଲ୍ୟୁସନ୍ କେଉଁଠି ପ୍ରଥମେ ତାର ଲୁକ୍କାୟିତ ଶକ୍ତିର ପ୍ରକଟ କରାଇବ ଜାଣ ? ତମର ଏଇ ମସ୍ତିଷ୍କର ଅସଂଖ୍ୟ ଅସଂଖ୍ୟ ଏଯାବତ୍ ଅବ୍ୟବହୃତ

ବ୍ରେନ୍‌ସେଲ୍‌ଗୁଡ଼ିକରେ । ପରେ ସମଗ୍ର ଶରୀରର ଜୀବକୋଷରେ । ପ୍ରତ୍ୟେକଟି ଜୀବକୋଷରେ । ଆଟମିକ୍ ଏନର୍ଜିଠାରୁ କୋଟି କୋଟି ଗୁଣ ଶକ୍ତିଶାଳୀ ଏନର୍ଜି ଏପର୍ଯ୍ୟନ୍ତ ଅନାବିଷ୍କୃତ ହୋଇ ପଡ଼ିରହିଛି ତମର ଏଇ କ୍ଷୁଦ୍ର ମସ୍ତିଷ୍କ ଓ ଶରୀରର ମାତ୍ର ତିନି ବିଲିୟନ୍ ସଂଖ୍ୟକ ଜୀବକୋଷ ମଧ୍ୟରେ, ମାଇ ଚାଇଲଡ୍ !'' ମସ୍ତିଷ୍କ ଭିତରକୁ ଛୁଞ୍ଚିଫୋଡ଼ା ଯନ୍ତ୍ରଣା ସେତେବେଳକୁ ରୂପାନ୍ତରିତ ହୋଇଗଲାଣି ଅପୂର୍ବ ସୁଖମୟ ଆହ୍ଲାଦକୁ ଅନୁରାଗର ଶରୀରରେ । ସେ ବୁଝୁଥାଏ ଯେ ଭବିଷ୍ୟତରେ ମେସିନ୍‌କୁ ସ୍ଥାନାନ୍ତରିତ କରିବ ମାଇଣ୍ଡ୍ । ଏ ଧାରଣାଟା ତାର କ୍ରମଶଃ ବଳବତ୍ତର ହେଉଥାଏ ।

ଏତିକିବେଳେ ଶୁଣାଗଲା ଖସ୍‌ଖସ୍ ଖସ୍‌ଖସ୍ ପାଦଶବ୍ଦ ଶୁଖିଲା ପତ୍ର ଉପରେ । ସେମାନେ ବୋଧହୁଏ ଗୋଟିଏ ଦଳରେ ଚୁପ୍‌ଚାପ୍ ଚାଲିଥିଲେ ହ୍ରଦକୂଳର ସେଇ ନିର୍ଦ୍ଦିଷ୍ଟ ସ୍ଥାନକୁ ଯୋଉଠି ଆଜିର ପରୀକ୍ଷା ପାଇଁ ଭେନ୍ୟୁ ଫିକ୍ସ କରିଥିଲେ ଡଃ ଫ୍ରୟଡ୍ ।

ଓଦା ଗାମୁଛା ପିନ୍ଧି ଅନୁରାଗ ତଥାପି ଠିଆ ହେଇଥାଏ । ତାକୁ ଫେରିବାକୁ ହେବ ଶୀଘ୍ର ନିଜ ଗୁମ୍ଫାକୁ । ଲୁଗା ବଦଳେଇ ପୁଣି ହାଜର ହେବାକୁ ପଡ଼ିବ ପରୀକ୍ଷା ସ୍ଥଳରେ । ତରବର ହେଉଥାଏ ସେ ।

ଦଳଟି ଯାକ ପୁଅଝିଅ ଗଛ ଆଢୁଆଳରୁ ବାହାରି ମୁକ୍ତ ଚଲାବାଟରେ ଅଗ୍ରସର ହେଉଥାନ୍ତି । ଅନୁରାଗ ଲକ୍ଷ୍ୟକଲା ସେମାନଙ୍କୁ । ସମଗ୍ର ପୃଥିବୀର ବିଭିନ୍ନ ଦେଶ, ବିଭିନ୍ନ ସଂସ୍କୃତି, ବିଭିନ୍ନ ଧର୍ମ ଓ ଐତିହାସିକତାର ଏକାନ୍ତ ଅନମନୀୟ ଏକକମାନେ ଏକ ଲାଇନ୍‌ରେ ଚାଲିଛନ୍ତି ଆଗକୁ ଆଗକୁ । ସେଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳକୁ । ସବାଆଗରେ ଚାଲିଥାଏ ଖମାର୍ ମନସୁର୍ । ତା ପଛକୁ ଥର୍, ଡିକ୍, ଏସକଫ୍, ହରମ୍ୟାନ୍, ମାୟାକୋଭସ୍କି, ଚାଓ, ବିଲ୍, ସୋଲୋମନ୍, ହାଇଫା, ହନୀଫା, ୟୁ, ମହମ୍ମଦ ବିରାଧୀ ବୀରବର, ମାସାକୋ ମାମ୍ଵା, ସୁଜୁକି, ସୁଜେନ୍, ଲିସା, ମ୍ୟାଡେଲିନ୍, ମ୍ୟାଗି ଇତ୍ୟାଦି ଇତ୍ୟାଦି ଶହେ ଉଣେଇଶ ଜଣ 'ଗୁଡ୍‌ସୋଲ୍‌ସ୍' ସାରା ପୃଥିବୀର । ସବାପଛରେ ଭ୍ୟାନ୍‌ଗାର୍ଡ ବନିଥାଏ ୟୁକାଟାନ୍—କେନ୍ଦ୍ର ଆମେରିକୀୟ 'ମୟ' ସଭ୍ୟତାର ପ୍ରତୀକ ଆମେରିକାନ୍ ଭାରତୀୟ-ୟୁକାଟାନ୍ ।

ସେମାନଙ୍କୁ ଦେଖି ଡଃ ଫ୍ରୟଡ୍ ହାତ ଠାରିଲେ ନିକଟକୁ ଆସିବାକୁ ତାଙ୍କର । ଆସିଲେ ସମସ୍ତେ । ସେଇ ଖସ୍‌ଖସ୍ ପାଦ ଶବ୍ଦଗୁଡ଼ିକ ବ୍ୟତୀତ ସମଗ୍ର ଉପତ୍ୟକା ବର୍ତ୍ତମାନ ନୀରବ, ନିସ୍ତବ୍ଧ । ଝିଙ୍କାରୀର ଝିଁ ଝିଁ ଶୁଭୁଥାଏ ମଧ୍ୟରାତ୍ରର ନିଶାଗର୍ଜନ ପରି କେବଳ ।

ଦଳଟି ଚୁପ୍‌ଚୁପ୍ ଘେରିଗଲେ ଡଃ ପ୍ରୟଡ୍‌ଙ୍କୁ । ବେଶ୍ କିଛିବେଳ ସ୍ତବ୍ଧତା ମଧ୍ୟରେ ସ୍ୱୟଂ ମହାକାଳର ଗର୍ଜନ ପରି ହଠାତ୍ ଏକ ଭୟଙ୍କର ଗର୍ଜନ ଶୁଣାଗଲା ଉପତ୍ୟକାର କୌଣସି ଏକ ପ୍ରାନ୍ତରୁ । ଏପର୍ଯ୍ୟନ୍ତ ବର୍ଷାଧିକ କାଳ ରହଣି ମଧ୍ୟରେ ଏପରି ହିଂସ୍ର ଗର୍ଜନ ଏଠାରେ କେବେହେଲେ ଶୁଣି ନ ଥିଲେ କେହି । ତେଣୁ ଆତଙ୍କିତ ହୋଇ ଗୋଟିଏ 'ହ୍ୟୁମାନ୍ ମାସ୍' ଆକାରରେ ସମସ୍ତେ ଏକାଥରକେ କୁଢ଼େଇ ହେଇପଡ଼ିଲେ ପରସ୍ପର ଉପରେ । ଅନୁରାଗ ବି ମିଶିଗଲା ସେଇ ପିଣ୍ଡୁଳାଟା ସହିତ ସହଜାତ ପ୍ରବୃତ୍ତି ପରିଚାଳିତ ହୋଇ !

ବ୍ୟାଘ୍ର ଗର୍ଜନ ଆହୁରି ଆହୁରି ନିକଟବର୍ତ୍ତୀ ହେବାକୁ ଲାଗିଲେ । ସମଗ୍ର ଉପତ୍ୟକା ପ୍ରତିଧ୍ୱନୀତ ହେଉଥାଏ ବାରମ୍ବାର ବଜ୍ରପାତ କେଉଁଠି ଘଟିଚାଲିଥିବା ପରି ।

ଅସ୍ଥିର ହୋଇପଡ଼ିଲା ପିଣ୍ଡୀକୃତ ମାନବ ଶରୀରଗୁଡ଼ିକ । ଥର୍ ହେରଡାହଲ୍ ସବାପ୍ରଥମେ ପିଣ୍ଡୁଳା ଭିତରୁ ହୁଗୁଳିଗଲା । ଧାଇଁଗଲା ସେ ତା'ର ସେଇ ନିଶ୍ଚିତ ଆଶ୍ରୟସ୍ଥଳ– ଲେକ୍ କୂଳକୁ । ଏକ ବିରାଟ ଲମ୍ଫରେ ସେ ପଡ଼ିଲା କୂଳଠୁଁ ଢେର୍ ଦୂର ହ୍ରଦର ଗଭୀର ଜଳରେ । ଅନ୍ୟମାନେ ଆପ୍ରାଣ ଚେଷ୍ଟା କରୁଥାନ୍ତି ବଡ଼ ବଡ଼ ଗଛ ଗୁଡ଼ାକରେ କୌଣସି ପ୍ରକାରେ ଚଢ଼ିଯାଇ ପ୍ରାଣ ବଞ୍ଚେଇ ନେବାକୁ ସେଇ ଆତଙ୍କର କବଳରୁ । ଝିଅମାନଙ୍କର ଅବସ୍ଥା ସବୁଠାରୁ ଅଧିକ ଶୋଚନୀୟ । ନା, ସାହସ କରିପାରୁଥାନ୍ତି ହ୍ରଦକୁ ଡେଇଁପଡ଼ିବାକୁ, ନା ଚଢ଼ିପାରୁଥାନ୍ତି ଗଛ ଉପରକୁ ।

ବ୍ୟାଘ୍ର ଗର୍ଜନରେ କାନ ପରଦା ଫାଟିଗଲା ପରି ଲାଗୁଥାଏ ଅନୁରାଗର । ସେ କିନ୍ତୁ ଠିଆ ହେବାକୁ ଆପ୍ରାଣ ଚେଷ୍ଟା ଚଳେଇଥାଏ ନିଜ ଗୋଡ଼ ଉପରେ, ଯେକୌଣସି ପ୍ରକାରେ । ଗୋଡ଼ଯୋଡ଼ିକ ଅବଶ୍ୟ ପ୍ରବଳ ସଂଗ୍ରାମ ଚଳାଇଥାନ୍ତି ତା ସହିତ ଆତ୍ମରକ୍ଷାର ପ୍ରବୃତ୍ତି ବଶତଃ ।

ଏକ ବିଶାଳ ମହାବଳ, ସ୍ୱୟଂ ନରସିଂହ ସତେକି, ବୃକ୍ଷ ଗହଳରୁ ପ୍ରକାଶ କରିସାରିଥାଏ ଏଇ ମଧ୍ୟରେ ନିଜକୁ । ଧୀର ପଦକ୍ଷେପରେ ଅଗ୍ରସର ହେଉଥାଏ ସେ ଘଟଣା ସ୍ଥଳରେ ଉପସ୍ଥିତ ଦୁଇଜଣ ମଣିଷଙ୍କୁ ଲକ୍ଷ୍ୟ କରିପାରି–ଡଃ ପ୍ରୟଡ୍ ଓ ଅନୁରାଗ ।

ମହାବଳ ବର୍ତ୍ତମାନ ଉପସ୍ଥିତ ଅନୁରାଗର ସମ୍ମୁଖରେ । ପ୍ରାୟ ଦଶହାତ ଦୂରତାରେ ମହାବଳ ନିଜର ସ୍ଥିତିକୁ ସ୍ଥିର କରିନେଲା ଏବଂ ଏକ ଲମ୍ଫରେ ଅନୁରାଗର କ୍ଷୁଦ୍ର ଶରୀରଟିକୁ କାବୁ କରିନେଇ ତାକୁ କାଖରେ ଜାକି ବଣ ଭିତରକୁ ପଳାୟନ

ପାଇଁ ଛକି ବସିପଡ଼ିଲା । ଆଖି ବୁଜିଦେଲା ଅନୁରାଗ । ସେକେଣ୍ଡ ଭିତରେ ସବୁ ସରିଯିବ ବୋଲି ସେ ସ୍ଥିର ନିଶ୍ଚିତ ହୋଇଗଲା ।

ହଠାତ୍ ଏକ ଅଭାବିତ ଘଟଣା ଘଟିଗଲା । ଆଖି ଫିଟିଗଲା ଅନୁରାଗର । ବିଶ୍ୱାସ କରିପାରିଲା ନାହିଁ ସେ ଆଦୌ ନିଜ ଆଖକୁ ମଧ୍ୟ । କିନ୍ତୁ ସେ ସ୍ପଷ୍ଟ ଦେଖିପାରୁଥାଏ ସେଇ ବିସ୍ମୟକର ଦୃଶ୍ୟଟିକୁ ।

ମହାବଳର ପଥରୋଧ କରି ଠିଆ ହେଇଥାଏ ଏକ ନାରୀ । ତା'ନାଁ ଖମାର୍ ! ମହାବଳ ଓ ଅନୁରାଗର ମଧ୍ୟସ୍ଥଳରେ ହିଁ ଦୃଢ଼ଭାବେ ଠିଆ ହେଇଥାଏ ଖମାର୍ ମନସୁର୍ ! ଅଣ୍ଟା ଉପରେ ଦୁଇହାତ ଭରାଦେଇ ଠିଆ ହୋଇରହିଥାଏ ସେ ଦେବୀ ମୂର୍ତ୍ତିଟି । ମୃତ୍ୟୁ ଓ ଅନୁରାଗ ମଧ୍ୟରେ ଦେବୀ ସ୍ୱୟଂ ! ଯମ ଓ ସତ୍ୟବାନ୍‌ଙ୍କ ମଧ୍ୟସ୍ଥଳରେ ସାବିତ୍ରୀଙ୍କ ପରି ଅଣ୍ଟାରେ ହାତ ଦେଇ ଠିଆ ହୋଇ ରହିଥାଏ ସେଇ ମୁସଲମାନ ଝିଅଟି ଯାହା ନାଁ ଖମାର ମନ୍‌ସୁର୍ ! ଏ ବିଶ୍ୱାସ ତଥାପି ଆସୁ ନ ଥାଏ ଅନୁରାଗର ଆତ୍ମାରେ ।

ନିସ୍ତବ୍ଧତା ଭଙ୍ଗ ହେଲା ଡଃ ଫ୍ରୟଡ୍‌ଙ୍କ ଅଟ୍ଟହାସ୍ୟରେ ।

"ୱେଲ୍ ମିସ୍ ! ତୁମେ ଶେଷରେ ଆବିଷ୍କାର କରିପାରିଲ ତମର ଯଥାଯୋଗ୍ୟ ବୟଫ୍ରେଣ୍ଡ ? ଖୁସି ହେଲି । ସୁଖି ହେଲି । ଅହିଂସାର ଅନ୍ୟ ନାମ ପ୍ରେମ । ପ୍ରେମର ପାୱାର୍ ତମରି ହୃଦୟରେ ଏତେ ଦୀର୍ଘକାଳ ଲୁଚି ରହିଥିଲା କାହିଁକି, ତା'ର କାରଣ ବୁଝିଲ ତ ଏବେ ?"

ବାଘଟି, କିନ୍ତୁ ମିଛବାଘ ନ ଥିଲା । ସେ ସେମିତି ବସି ରହିଥାଏ । ତା'ର ଶିକାର ସେ ଦିନ ପ୍ରକୃତ କିଏ, ବୋଧହୁଏ ଏହି ସଂଶୟରେ ସନ୍ଦିହାନ ହୋଇ ସେ ବର୍ତ୍ତମାନ ଲକ୍ଷ୍ୟ କରୁଥାଏ ଗଛ ଡାଳକୁ, ହ୍ରଦଜଳକୁ ବି ମଝିରେ ମଝିରେ ।

ଥର୍ ହ୍ରଦ ଭିତରୁ ଲକ୍ଷ୍ୟ କରୁଥାଏ ଦୃଶ୍ୟଟିକୁ । ବିଲ୍, ଡିକ୍ ଇତ୍ୟାଦି ଗଛ ଡାଳରୁ । ଅନ୍ୟମାନେ କିଏ କୋଉଠୁ ! ସମଗ୍ର ଉପତ୍ୟକା ଉପରେ ଆତଙ୍କର ରାଜୁଡି ଆହୁରି ଘନୀଭୂତ ହେଉଥାଏ । ହଠାତ୍ ଡଃ ଫ୍ରୟଡ୍‌ଙ୍କ ଗମ୍ଭୀର ସ୍ୱର ଶୁଣାଗଲା, "ପାଣିରୁ ବାହାରିଆସ ଥର୍ । ଗଛରୁ ଓହ୍ଲାଅ ବିଲ୍, ଡିକ୍, ହରମ୍ୟାନ୍ । ସମସ୍ତେ ଏଠାକୁ ଆସ । ପରୀକ୍ଷା ହେବ ତମ ପ୍ରତ୍ୟେକଙ୍କର– କେବଳ ଏଇ ଦୁଇଜଣଙ୍କ ବ୍ୟତୀତ । ସେ ଦୁହେଁ ପାଶ୍ କରିଗଲେ । ବର୍ତ୍ତମାନ ଆସ ସମସ୍ତେ । ଜଣଜଣ କରି ପ୍ରତ୍ୟେକେ ଆଉଁଶି ଆଉଁଶି ଶାନ୍ତ କର ଏଇ ହିଂସ୍ର ମହାବଳକୁ । ଯେ ନ ପାରିବ, ପଛଘୁଞ୍ଚା ଦେବ, ତା'ପାଇଁ ଏକମାତ୍ର ରାସ୍ତା— ବିଗିନ୍ ଦ ହୋଲ୍ ଥିଙ୍ଗ୍ ଏଗେନ୍ ! ସାପଲୁଡୁ ଖେଳିଛ କେବେ ? ଯେ ଉଠି ଉଠି

ଚାଲିଥାଏ ସିଡ଼ିରେ ସିଡ଼ିରେ . ସେ ବି ପଡୁଥାଏ ସାପ ମୁହଁରେ । ଥରେ ଥରେ ଅଠାନବେରୁ ଖସିଆସିବାକୁ ହୁଏ ପୁଣି ଶୂନ୍ ପାଖାପାଖି ଏକ ବା ଦୁଇକୁ । ଏଥିରେ ଦୁଃଖିତ ହେବାର କିଛି ନାହିଁ । ଏହାହିଁ ଯୋଗର ଶୃଙ୍ଖଳା । ଆସ ଛଣ ଛଣ କରି ଏଠାକୁ । ବଶୀଭୂତ କର ଏଇ ହିଂସ୍ର ଆରଣ୍ୟକ ପ୍ରାଚୀନ ଯୁଗର ଅବଶେଷର ପ୍ରତୀକ — ଏଇ ଭୟଙ୍କର ପଶୁଟିକୁ । ପାରିବ ତ ?''

ସେମାନେ ତଥାପି ସାହସ ସଂଗ୍ରହ କରୁଥାନ୍ତି । ଥର୍ ହେଡରଡାହଲ୍ ଆସ୍ତେ ଆସ୍ତେ ପହଁରି ପହଁରି ଗଭୀର ହ୍ରଦର ମଧ୍ୟଭାଗରୁ ଆସିଗଲାଣି କୂଳର ବହୁ ନିକଟକୁ । ବିଲ୍ ଓହ୍ଲାଉଥାଏ ଉଚ୍ଚ ଡାଳରୁ । ଡିକ୍ , ହରମ୍ୟାନ୍, ଏସ୍‌କପ୍ ବସିରହିଥାନ୍ତି ଗଛଡାଳରେ— ବିଚିତ୍ର ମୁଖଭଙ୍ଗୀ କରି ଅଜ୍ଞାତସାରରେ ନିଶ୍ଚେ । ନାରୀଗଣ ତଥାପି ଲୁକ୍କାୟିତ କେଉଁଠି କିଏ ଜାଣେ ।

ଏଇ ଅବସରରେ ଖମାର୍‌ର ହାତକୁ ନିଜ ହାତ ମୁଠାରେ ଧରିନେଲା ଅନୁରାଗ । ଚମକିପଡ଼ିଲା ନାହିଁ ସେ । ଟିକେ ହସିଦେଲା । କହିଲା,''ରୂପାନ୍ତର....? ମୁଁ ତ ମନେ କରିଥିଲି ଏ ବାଘ ସତରେ ତମକୁ ଝାମ୍ପିନେଇ ଯାଇଥାନ୍ତା ଅନୁରାଗ ! ଆଲ୍ଲା ରକ୍ଷା କରିଦେଲେ ଆମକୁ ଆଜି ନିଶ୍ଚେ ।''

ଖମାର୍‌ର ହାତକୁ ତଥାପି ଧରି ରଖିଥାଏ ଅନୁରାଗ । ଡଃ ଫ୍ରୟଡ୍ ସପ୍ରସନ୍ନ ଦୃଷ୍ଟିରେ ଚାହିଁ ରହିଥାନ୍ତି ଉଭୟଙ୍କୁ । ତାଙ୍କର ପ୍ରସନ୍ନତାର କାରଣ — ହିଂସା ଘୃଣା ଦ୍ୱେଷ ଅହଂକାର ଏଇ ସ୍ୱଳ୍ପକାଳ ଭିତରେ କେତେ ରୂପାନ୍ତରିତ ହୋଇସାରିଥାଏ ତାରି ପ୍ରମାଣ ଦେଖୁଥାନ୍ତି ସେ ସ୍ୱଚକ୍ଷୁରେ ।

ଏଇ ଭିତରେ ଥର୍ ଉଠିଆସିଥାଏ ପାଣିରୁ । ଓଦା ସଡ୍‌ସଡ୍ । ଲମ୍ବାଲମ୍ବା ମୁଣ୍ଡବାଳଗୁଡ଼ିକ ବଳା ଦଉଡ଼ି ଭଳି କେରାକେରା ହେଇ ଝୁଲୁଥାଏ ତା ମୁହଁ ଚାରିପାଖେ । ବିଲ୍, ଡିକ୍ ଆଉ ଅନ୍ୟମାନେ ଓହ୍ଲେଇ ସାରିଥାନ୍ତି ଗଛଉପରୁ । ଝିଅମାନେ ଦଳବାନ୍ଧି ବିଭିନ୍ନ ଦିଗରୁ ଆସୁଥାନ୍ତି ଧୀରେ ଧୀରେ । ସେମାନେ ନିଶ୍ଚେ ଦେଖିସାରିଥାନ୍ତି ତାଙ୍କ ନେତ୍ରୀ ଖମାର୍ ମନ୍‌ସୁର୍‌ର ଦୁଃସାହସକୁ ।

ସବାପ୍ରଥମେ ଥର୍ ହେଡ଼ରଡାହଲ ଆସିଲା ପରୀକ୍ଷା ଦେବାକୁ । ମହାବଳର ମୁହଁ ସାମ୍ନାରେ ହିଁ ଶେଷରେ ଠିଆ ହେଇପଡ଼ି ଘୋଷଣା କଲା ସେ— ''ମୋ ପାଇଁ ତମେ ମୃତ୍ୟୁ ନୁହଁ— ଛଳନା କରନା ଆଉ । ମୁଁ ଜାଣେ ତୁମେ କିଏ । ୟୁ ଆର୍ ମାଇଁ ପାଷ୍ଟ ଅବତାର । ଆଇ ହାଭ୍ ସରପାସ୍‌ଡ୍ ୟୁ ଅଲ୍‌ରେଡି....ମୁଁ ତମକୁ ଅତିକ୍ରମ କରି ସାରିଛି କେଉଁ ଦିନୁ ! କମ୍....ମାଇଁ ଫ୍ରେଣ୍ଡ୍.. ।''

ହଠାତ୍ ଥର୍ ମହାବଳର ବିଶାଳ ମୁଣ୍ଡଟାକୁ ତାର ଲମ୍ବାଲମ୍ବା ବାହୁ ଦୁଇଟି ମଝିରେ ଚାକିଧରିଲା ଓ ମହାବଳର ଓଠ ଉପରେ ଘନଘନ ଚୁମ୍ବନ ପ୍ରଦାନ କରିବାରେ ପ୍ରମତ୍ତ ହୋଇ ପଡ଼ିଲା ।

"ତମ ଟେଷ୍ଟ ସରିଲା ଥର୍ ହେଡରଡାହଲ୍," ଗମ୍ଭୀର କଣ୍ଠରେ ଚେତେଇ ଦେଲେ ଡଃ ଫ୍ରୟଡ,"ନାଓ ନେକ୍ସ୍ଟ ପର୍ସନ ପ୍ଲିଜ୍ !"

ପରୀକ୍ଷା ଚାଲୁରହିଥାଏ ।

ଖମାର୍‌ର ହାତ ଛାଡ଼ିଦେଇ ଅନୁ କହିଲା, "ଯାଏଁ । ବହୁବେଳୁ ଓଦା ଗାମୁଛା ଖଣ୍ଡେ ପିନ୍ଧି ଠିଆ ହେଲିଣି ମୁଁ । ମତେ ୟାକୁ ବଦଳେଇବାକୁ ପଡ଼ିବ । ଗୁମ୍ଫାକୁ ଯାଉଛି ମୁଁ ।"

ଡଃ ଫ୍ରୟଡଙ୍କ ଅନୁମତି ନେଇ ଅନୁରାଗ ଚାଲିଥାଏ ବଣ ଭିତର ଦେଇ ଘରମୁହାଁ । କିଛି ସମୟ ପରେ ତାକୁ ଜଣାଗଲା କେହି ଜଣେ ଯେମିତି ଅନୁସରଣ କରୁଛି ମଧ୍ୟ ତାକୁ ।

ଘୂରିପଡ଼ିଲା ସେ । ଦେଖିଲା— ଖମାର୍ । ସେ କାହିଁକି ଆସୁଛି ପଛେ ପଛେ ତା'ର ?

ଅପେକ୍ଷା 'କଲା ଅନୁରାଗ । ଖମାର୍ ଲାଗି ଆସୁଥାଏ ପାଖକୁ ପାଖକୁ । ମୁହୂର୍ତ୍ତକ ଉତ୍ତାରେ ଝିଅଟି ଏକେବାରେ ପହଞ୍ଚିଗଲା ତା ପାଖାପାଖି । ଧୀରେ ଧୀରେ ସେ ଆହୁରି ଲାଗି ଆସିଲା । ଅନୁରାଗ ଏଥର ସ୍ପଷ୍ଟ ଅନୁଭବ କଲା ତା ନିଜ ଛାତି ଉପରେ ଉଷୁମ ନିଶ୍ୱାସ କେତୋଟି । ଘନ ଘନ ଉଷ୍ଣ ଶ୍ୱାସ ।

ଖମାର୍‌କୁ ନିଜ ଛାତି ଉପରକୁ ଟାଣି ଆଣିଲା ଅନୁରାଗ । ଆସ୍ତେକରି କାନରେ କହିଲା,

"ମୁଁ ତୁମକୁ ମୂଳରୁ ହିଁ ଭଲ ପାଇଯାଇଥିଲି ଖମାର୍ ! ବିଶ୍ୱାସ କର । ତମେ ଯଦି ସେଦିନ ଲାଉଞ୍ଜରେ ମୋ ପାଖ ସିଟ୍‌ରେ ବସିପଡ଼ିଥାନ୍ତ ମୋ ଅନୁରୋଧ ରକ୍ଷାକରି....ମତେ ଘୃଣା କରି ନ ଥାନ୍ତ ହିନ୍ଦୁ, କାଫେର୍, ଇଣ୍ଡିଆନ୍ ମନେକରି..."

ଅନୁରାଗର ପାଟି ବନ୍ଦ କରିଦେଲା ଖମାର୍ ତା ନିଜ ହାତଟାକୁ ଜୋର୍‌ରେ ଚାପିଧରି ଅନୁ ମୁହଁ ଉପରେ । ଧୀରେ, ଖୁବ୍ ମିଠା ଗଳାରେ କହିଲା ସେ,

"ପୂର୍ବାଶ୍ରମ ଭୁଲିଯାଅ ଅନୁ । ମାଡାମ୍ ଠିକ୍ କହିଥିଲେ— ଆମେ ଏଠୁଁ ଫେରିବା ବେଳକୁ ନିଶ୍ଚେ ଭୁଲି ଯାଇଥିବା ଆମର ସମସ୍ତ ମନ୍ଦ ଅତୀତକୁ । ଇସ୍ କି ଅସୁନ୍ଦର ସେସବୁ ଦିନ, ବନ୍ଧୁ ! ଆଉ ମନେ ପକେଇ ଦିଅନା ମୋର । ଛାଡ଼ ସେସବୁ !"

ଅନୁରାଗର ଗୁମ୍ଫା ଦିଗରେ ଚାଲିଥାନ୍ତି ଦୁଇଜଣ ଭାବି ବିଶ୍ୱର ନାଗରିକ, ପ୍ରେମିକ ପ୍ରେମିକା ପରି । ଆଦାମ୍ ଇଭ୍ ପରି ନୁହେଁ; ଦୁଇଜଣ ଅତି ଆଧୁନିକ ସଭ୍ୟ ମଣିଷଙ୍କ ପରି ଯେଉଁମାନେ ବଛାଯାଇଥିଲେ ଛ'ବିଲିୟନ୍ ଜନସାଧାରଣଙ୍କ ଭିତରୁ, ସେମାନଙ୍କର କୌଣସି ଅସାଧାରଣ ଯୋଗ୍ୟତା ଯୋଗୁଁ, ମାତ୍ର ଶହେ କୋଡ଼ିଏ ଜଣଙ୍କ ସହିତ ସାରା ପୃଥିବୀରୁ !

"କିନ୍ତୁ ମୁଁ ମୋ ଅତୀତକୁ ଆଦୌ ଭୁଲିପାରୁନି ଖମାର୍," ଗୁମ୍ଫା ଭିତରକୁ ଉଭୟ ପ୍ରବେଶ କଲାପରେ ଅନୁରାଗ କହିଲା, "ମୋ ବାପା ଯଦି ସେଦିନ କ୍ରୋଧବଶତଃ ସେଇ ଫଟୋଗ୍ରାଫ୍‌ଗୁଡ଼ିକୁ ସେଭଳି ନିର୍ଦ୍ଦୟ ଭାବେ ଭାଙ୍ଗି ପକାଇ ନ ଥାନ୍ତେ.... ଆଜି ମୁଁ ସେମାନଙ୍କୁ ସଶରୀରେ ଦେଖି ପାରି ନ ଥାନ୍ତି ନିଶ୍ଚୟ । ମୁଁ ଖୁବ୍ କୃତଜ୍ଞ ସେଥିପାଇଁ ମୋର ପିତାଙ୍କ ନିକଟରେ । ସେ ଦୃଶ୍ୟଟା ଭୁଲି ପାରୁ ନାହିଁ ଆଦୌ ।"

"ଓଦାଲୁଗା ବଦଳେଇପକାଅ ଶୀଘ୍ର । ଥଣ୍ଡା ଧରିବ," ଖମାର୍ ଖୋଲୁଥିଲା ଅନୁରାଗର ସେଇ ପୁରୁଣା ପ୍ୟାଣ୍ଟଶାର୍ଟ ହଳକୁ, ଗୁମ୍ଫା ଭିତରେ ଆଖି ବୁଲେଇ ବୁଲେଇ ।

"ତୁମ ବାପା ମା ନିଶ୍ଚେ ତମକୁ ଖୁବ୍ ଭଲ ପାଉଥିବେ ଖମାର୍ ?" ହଠାତ୍ କାହିଁକି ସେଇ ପ୍ରଶ୍ନଟି ପଚାରିଦେଲା ଅନୁରାଗ ।

"ସେ କଥା ପଚାର ନାହିଁ । କହିଲି ପରା ଭୁଲିଯାଅ ସେ ମନ୍ଦ ପୂର୍ବାଶ୍ରମକୁ....," କୋଉ କଣରୁ ଗୋଟିଏ କନା ବିଣ୍ଡା ଆବିଷ୍କାର କଲା ଖମାର୍ । ତାହାହିଁ ଥିଲା ଅନୁରାଗର ଡ୍ରେସ୍ ।

"ଏଣିକି ଆମେ ମେନ୍ ବିଲ୍‌ଡିଂକୁ ଚାଲିଯିବା ନା ?" ଅନୁରାଗ ହାତକୁ ତାର ଚିରାପ୍ୟାଣ୍ଟ ଶାର୍ଟ ହଳକୁ ଲୁଗା ବିଣ୍ଡାରୁ ଖୋଲୁ ଖୋଲୁ ଖମାର୍ ହଠାତ୍ ସୁକୁସୁକୁ ହୋଇ ଉଠିଲା । ପରେ ପରେ ଗୋଟିଏ ଛୋଟ ପିଲା ପରି କଇଁକଇଁ ହେଇ କାନ୍ଦି ଉଠିଲା ସେ ।

''ଆରେ ଆରେ, ଏ କ'ଣ ଖମାର୍ ! ଏ କ'ଣ ?'' ଝିଅଟିକୁ ଆଲିଙ୍ଗନ ଭିତରେ ଦୃଢ଼କରି ଧରିନେଇ ଅନୁରାଗ ଏଥର ସିଧା ଚାହିଁଲା ତା'ର ସେଇ ସୁନ୍ଦର ଅଷ୍ଟମୀର ଚନ୍ଦ୍ରପରି ଆଖି ଯୋଡ଼ିକୁ । ତା'ର ଦୃଷ୍ଟି ଖମାର୍‌ର ବାହ୍ୟ ଚକ୍ଷୁକୁ ଚାହୁଁ ନ ଥାଏ । ଅନୁସନ୍ଧାନ କରୁଥାଏ ଅନେକ ଗଭୀରରେ ପୋତି ହେଇ ରହିଥିବା ତାର ଅର୍ନ୍ତଚକ୍ଷୁକୁ ଯେଉଁଠୁ ଖମାର୍ ନିରୀକ୍ଷଣ କରୁଥାଏ ତା'ର ଅତୀତକୁ ଓ ଅବୁଝା ପିଲାଟି ପରି ଆହୁରି ଆହୁରି ଫୁଲିଫୁଲି କାନ୍ଦୁଥାଏ ଯେତେଥର ଦେଖୁଥାଏ ସେ ସେଇ ଭୟଙ୍କର ଦୃଶ୍ୟଗୁଡ଼ାକୁ ।

ଅନୁରାଗ ମଧ୍ୟ ଏଥର ନିଜ ଯୋଗଦୃଷ୍ଟିରେ ଦେଖିପାରିଲା ସେଇ ନିରିମାଖୀ ଝିଅ ଖମାର୍‌ର ଅତୀତକୁ । ଖମାର ମଧ୍ୟ ସକେଇ ସକେଇ କହିଲା ଅନେକ ଅନେକ ଦୁଃଖକଥା ଅତୀତର— ତା ଜୀବନର, ତାଙ୍କ ପରିବାର କାହାଣୀରୁ କିଛି ଅଂଶ ।

ଖମାର୍ ଥିଲା ପିତୃମାତୃବିହୀନା । ସେମାନେ, ଅର୍ଥାତ୍ ପଲିଟିକାଲ୍ ଦଲାଲ୍‌ମାନେ ଚାରିବର୍ଷ ତଳେ ମାରିଦେଇଥିଲେ ତା'ର ବାପାମା'ଙ୍କୁ । କରାଚିରେ ଟେରରିଷ୍ଟ୍ ବମ୍ ବିସ୍ଫୋରଣରେ ମରିଯାଇଥିଲେ ତାର ବାପା ମା । ସେତେବେଳେ ତାକୁ ବୟସ ଚଉଦ । ଏହାପରେ ଆସିଲେ ଆର୍ମି; ମିଲିଟାରୀ । ଖମାର୍‌ର ସୁକୁମାର ଶରୀରକୁ ବାରମ୍ବାର ବିଦୀର୍ଣ୍ଣ କରିଥିଲେ ସେଇ କାମୁକ ଦଳ ।

ଦୃଶ୍ୟଟାକୁ ଦେଖି ଦେବା ମାତ୍ରେ ଅନୁରାଗ ନିର୍ବାକ୍ ହୋଇ କେବଳ ଚାହିଁ ରହିଲା ଖମାର୍‌ର ମୁହଁକୁ ।

''ଆମେ ମୋହାଜୀର୍...ପଚାଶ ବର୍ଷ ତଳେ ଆମର ଲୋକେ ଓ ମୋ ଜେଜେବାପା ଜେଜେମା ଥିଲେ ଭାରତର ନାଗରିକ,'' ଲୁହ ପୋଛି କହୁଥାଏ ଖମାର୍,'' ଆମର କଳ୍ପନାର ସ୍ୱର୍ଗ ଧୂଳିସାତ୍ ହୋଇଗଲାଣି ଏଇ ପଚାଶଟି ବର୍ଷ ଭିତରେ । ମୋ ଜେଜେ, ଜେଜେମା ବହୁ ସ୍ୱପ୍ନନେଇ ଯାଇଥିଲେ ସେଠିକି । କିନ୍ତୁ ଆଜି....''

ଖମାର୍‌ପାଇଁ ଅନୁରାଗ ମୁହଁରେ ସାନ୍ତ୍ୱନାର ଭାଷା କିଛି ନ ଥିଲା । ସେ କେବଳ କହିଲା,

''ଏଇ ହେଲା ଆମର ଅତୀତ, ଆମର ଉଭୟଙ୍କର, 'କମନ୍-ଅନ୍‌କନ୍‌ସସ୍' ଖମାର୍ । ମୁଁ ଜାଣେ ଥର୍, ବିଲ୍, ଡିକ୍, ଏସକଙ୍କ ଅତୀତ ମଧ୍ୟ ଏଇଆ । ସେମାନେ ଚିହ୍ନନ୍ତି ନାହିଁ ସୁଦ୍ଧା ସେମାନଙ୍କ ମା'ବାପାଙ୍କୁ ଖମାର୍ । ଆମର ସୌଭାଗ୍ୟ-ଆମେ ଆମରି ଠିକଣା ଜାଣୁ । ଆମର ବାପାମା' ଥିଲେ ବା ଅଛନ୍ତି

ବୋଲି ଜାଣୁ । କିନ୍ତୁ ସେତିକି ସୌଭାଗ୍ୟ ମିଳି ନାହିଁ ସେମାନଙ୍କୁ ମଧ୍ୟ ଖମାର୍ ! ଏ କ୍ୟାମ୍ପର ଅଧିକାଂଶ ଏଇ ଅତୀତର ଅଂଶୀଦାର । ଜାଣେ ମୁଁ । ଛାଡ଼ । ଭୁଲିଯାଅ । ସତରେ ଭୁଲିଯାଅ ପୂର୍ବାଶ୍ରମକୁ ତମର ଖମାର୍ । ମୁଁ ବି ଚେଷ୍ଟା କରୁଚି ଭୁଲିଯିବାକୁ । ଆଗକୁ ଚାହଁ— ଏକ ଉଜ୍ଜ୍ୱଳ ଭବିଷ୍ୟତ ଅପେକ୍ଷା କରିଛି ଆମପାଇଁ ନିଶ୍ଚୟ । ଆମେ ହେବା ମଣିଷର ଭାଗ୍ୟ ପରିବର୍ତ୍ତନପାଇଁ ଗୋଟିଏ ଗୋଟିଏ ନୂତନ ଶକ୍ତି । ଏଥର ସୁପରମ୍ୟାନ୍ ନୁହେଁ; ସୁପ୍ରାମେଣ୍ଟାଲ୍ ଶକ୍ତିର କାର୍ଯ୍ୟ ଆରମ୍ଭ ହେବ ନିଶ୍ଚେ ସେଇ ଦୁର୍ଭାଗା ପୃଥିବୀର ଜଡ଼, ଜାନ୍ତବ ଶକ୍ତି ବିରୋଧରେ । ନିଜକୁ ପ୍ରସ୍ତୁତ କରିନିଅ ଖମାର୍ । ଚାଲ, ଭଲ ପାଇବା, ପ୍ରାଣ ଭରି ଭଲ ପାଇବା ଆମେ ସେଇ ମାଟି ଖଣ୍ଡକୁ ଯାହା ନାଁ ପୃଥିବୀ । ହାୟରେ ମାତା ପୃଥିବୀ ! ତୋତେ ଏତେ କଷ୍ଟ ଦେବା ପାଇଁ, ଏଭଳି ନିର୍ଯାତିତା କରିବା ପାଇଁ, କ'ଣ ସତେ ତତେ ଗଢ଼ାଯାଇଥିଲା । ବିଗ୍‌ବ୍ୟାଙ୍ଗର ସୁନିର୍ବାଚିତ ମୁହୂର୍ତ୍ତରେ ଏଇ ଭାଗ୍ୟ ତୋପାଇଁ ନିର୍ବାଚିତ ହୋଇଥିଲା ସେଦିନ ସତେ ଆଜିକୁ ଶହେକୋଟି ବର୍ଷ ତଳେ ? ତେବେ ଭାଗ୍ୟକୁ, ଡେଷ୍ଟିନିକୁ ମଧ୍ୟ ଚାଲେଞ୍ଜ କରିବାର ମୁହୂର୍ତ୍ତ ପହଞ୍ଚିଗଲା ଖମାର୍ ! ଭୁଲିଯାଅ ଭାଗ୍ୟ ଭଗବାନ୍ ସମସ୍ତଙ୍କୁ । ସମସ୍ତଙ୍କୁ ଯଦି ଭଗବାନ୍ ସର୍ବବ୍ୟାପି ତେବେ ତମ ମୋ ଭିତରେ ଏବଂ ସମସ୍ତଙ୍କ ଭିତରେ ମଧ୍ୟ ଉପସ୍ଥିତ ଅଛନ୍ତି ଭଗବାନ୍ । ଏଇ ପଥର ଖଣ୍ଡିକ ଭିତରେ ମଧ ଅଛନ୍ତି ଭଗବାନ୍ ।''

ନିକଟ ତ୍ରାଟକ ପ୍ରାକ୍ଟିସ୍ ପାଇଁ ଯେଉଁ ଛୋଟ ଗୋଲ ପଥର ଖଣ୍ଡକୁ ପୂର୍ବେ ବ୍ୟବହାର କରୁଥିଲା ଅନୁରାଗ ଯୋଗ ସାଧନାର ପ୍ରଥମ ପ୍ରଥମ ଦିନ ଗୁଡ଼ିକରେ, ହଠାତ୍ ସେଇ ଶାଳଗ୍ରାମ ଶିଳାଟି ନଜରରେ ପଡ଼ିଗଲା ତା'ର ।

ତାକୁଇ ଉଠେଇଆଣି ହାତରେ ଧରିଲା ଅନୁରାଗ । କିନ୍ତୁ ତତ୍‌କ୍ଷଣାତ୍ ଏକ 'ଭୀଷଣ ଚିତ୍କାର କଲା ଖମାର୍—

''ଥ୍ରୋ ଇଟ୍ ଆଇ ସେ;—'' ବଡ଼ବଡ଼ ଆଖିରେ ଅନୁରାଗକୁ ଚାହିଁଲା ଖମାର । ସତର୍କ କରିଦେଲା ସେ, ''ତୁମେ ପୁଣି ପୂର୍ବାଶ୍ରମକୁ ଫେରୁଚ ଅନୁରାଗ । ମୂର୍ତ୍ତିପୂଜା ତମର ପୁରୁଣା ରୋଗ । ଜାଣେ ମୁଁ । ପୁଣି ବାହାରିଲା ନା ସେ ରୋଗ ?''

ହୋ ହୋ ହେଇ ହସିଉଠିଲା ଅନୁରାଗ । ଖମାର ଆଡ଼କୁ ଗୋଲ୍ ପଥର ଖଣ୍ଡକୁ ବଢ଼େଇ ଦେଇ କହିଲା, ''ଧର । ଡରନା । ଧର ଯାକୁ । ଏଟା ମୁଣ୍ଡାଏ ୟୁରାନିୟମ୍ ୨୩୫ ନୁହଁ କି ପରମାଣୁ ବୋମା ମଧ୍ୟ ନୁହେଁ । ସାଧାରଣ

ପଥର ଖଣ୍ଡେ । ବର୍ତ୍ତମାନ ଆମର ସମସ୍ୟା— ଏଇ ଜଡ଼, ସ୍ଥୂଳ, ବରାବର ଅପରିବର୍ତ୍ତନୀୟ ପଥର ଖଣ୍ଡକୁ ତମେ ତମ ଚେତନା ଶକ୍ତି ବଳରେ ରୂପାନ୍ତରିତ କରିପାରିବ କି କୌଣସି ନମନୀୟ କମନୀୟ ସଚେତନ ସଜୀବ ବସ୍ତୁକୁ ? ଦିନେ ମଦର୍ ନେଚର୍ ଏହାହିଁ କରିପାରିଥିଲା । ମୁଣ୍ଡାଏ ପଦାର୍ଥକୁ ପରିବର୍ତ୍ତିତ କରିଥିଲା ମେଞ୍ଚାଏ ଥଲ୍‌ଥଲ୍ ଜୀବନ୍ତ ପ୍ରୋଟୋପ୍ଲାଜମକୁ ଯେଉଁଥିରୁ ତିଆରି ତୁମେ, ମୁଁ ଆଉ ଆମର ଆସୁରିକ ପୃଥିବୀର ସେଇ ଅସୁର ରାଜନୀତି ବିଶାରଦମାନେ । ଯାହାଙ୍କ ପ୍ରାଦୁର୍ଭାବରୁ ଆଜି ଏ ଅବସ୍ଥା ତମର ମୋର ଆଉ ଆମ ସମସ୍ତଙ୍କର । ନିଅ । ଧର ହାତରେ ନିଜର ଏଇ ପଥର ଖଣ୍ଡକୁ, ଖମାର୍ । ଯାକୁ ଥରେ ଚାହଁ ସ୍ନେହରେ । ପ୍ରେମରେ ଚୁମ୍ବନଟିଏ ଦିଅ ଥରେ ଯା ମୁହଁରେ । ଯାକୁ ଉତ୍ସାହ ଦିଅ— କୁହ ବରାବର ଯା କାନରେ—

'ତୁ ହେବୁ ତୁ ହେବୁ ତୁ ହେବୁ । ଖାଲି ଗଛ ଲତା ନୁହେଁ, ପଶୁ ପକ୍ଷୀ ନୁହେଁ, ମଣିଷ ବି ନୁହେଁ ତୁ ଉଠି ପାରିବୁ ସିଧା ସଳଖ ଈଶ୍ୱରଙ୍କ ପର୍ଯ୍ୟନ୍ତ !!' ଏଇ ବାଣୀ ପରମ ବାତ୍ସଲ୍ୟର ସହିତ କହିଚାଲ ଖମାର, ଏ ପଥର ଖଣ୍ଡକର କାନରେ । ଦିନେ ଶୁଣିବ ! ଏଇ ସାମାନ୍ୟ ପଥର ଖଣ୍ଡକ ମଧ୍ୟ ତୁମକୁ ଡାକିବ — ମା ! ମା ! ମା ! ଅମ୍ମୀ ! ଅମ୍ମୀ !'

ଆଖିପିଛୁଳାକେ ଅନୁରାଗ ହାତରୁ ଶାଳଗ୍ରାମ ଶିଳାଟିକୁ ଝାମ୍ପିନେଲା ଖମାର୍ । ତାକୁ ଛାତିରେ ଜାକିଧରିଲା ସେ । ପଚାରିଲା, "ସତ ? ସତ କହୁଚ ? ଯେ ମତେ ଦିନେ 'ମା' ବୋଲି ଡାକିବ ? ସତ କହୁଚ !"

ଆସ୍ତେକିନା ଉଠିଲା ଖମାର । ଶାଳଗ୍ରାମ ଶିଳାଟିକୁ ଛାତିରେ ଦୁଇହାତରେ ଚାପି ଚୁପ୍‌ଚାପ୍ ବାହାରିଗଲା ସେ ଅନୁରାଗର ଗୁମ୍ଫାରୁ ।

ଉପତ୍ୟକାରେ ବ୍ୟାଘ୍ର ଗର୍ଜନ ପୁଣି ଶୁଣାଗଲା । ଡକ୍ଟର ଫ୍ରୟଡ୍‌ଙ୍କ ପରୀକ୍ଷା ସରି ଯାଇଥିଲା ବୋଧହୁଏ । ବ୍ୟାଘ୍ରଟି ପୁଣି ଫେରି ଯାଉଥିଲା ହଣ୍ଡାଳି ହଣ୍ଡାଳି ନିଜ ଗୁମ୍ଫାକୁ ।

ନୈମିଷାରଣ୍ୟର କେଉଁ ଗୁମ୍ଫାରେ ସେଇ ମହାଭୟଙ୍କର ମହାବଳକୁ ସ୍ଥାନ ଦେଇଥିଲେ ଡଃ ଫ୍ରୟଡ୍ କେଜାଣି !! ବାଘଟା ମିଛ ନୁହେଁ, ମାୟା ବ୍ୟାଘ୍ର ନୁହେଁ, ଜୀବନ୍ତ ସତ୍ୟ ଆଉ ବାସ୍ତବ ଏ କ'ଣ ସତ୍ୟ ? ଏହାରି ହିଂସ୍ରତା ତେବେ ଏକାଠି କରିଦେଲା ଆଖି ପଲକରେ ଖମାର୍ ସହିତ ଅନୁରାଗକୁ ! ଏହା ମଧ୍ୟ କଣ ସତ୍ୟ, ବାସ୍ତବ ଆଉ ଚିରନ୍ତନ ?

---

